ପ୍ରଭାତ ପ୍ରକାଶନୀ— ଚତୁର୍ଥ ଅବଦାନ

# ସ୍ମୃତି

ରାଜା ଜଗନ୍ନାଥ ଦେବ ବର୍ମା

# ବକ୍ତବ୍ୟ

'ସ୍ମୃତି' ଲେଖକର କେତୋଟି ସମଧର୍ମି କବିତାର ଏକତ୍ର ସଂଚୟନ । କବିତା ଲେଖିବାରେ ମୁଁ ଯେଉଁ ଅପୂର୍ବ ଆନନ୍ଦ ଉପଭୋଗ କରେ ସେଥିପାଇଁ ଏ ମୋର ଜୀବନ-ଦେବତାର ଚରଣ-ପଙ୍କଜପ୍ରାନ୍ତରେ ଆଜ ବିନୀତ ପ୍ରଣତି ଜଣାଉଛି ।

ଏଥିପୂର୍ବେ ' ସ୍ମୃତି 'ର କେତୋଟି କବିତା 'ସହକାର', 'ଝଙ୍କାର', 'ବୀଣା' ପ୍ରଭୃତି ମାସିକ ସାହିତ୍ୟ ପତ୍ରିକାରେ ପ୍ରକାଶ ପାଇଛି । ଆଜ ସେଇ ଉତ୍ସାହଦାତା ବରେଣ୍ୟ ସମ୍ପାଦକମାନଙ୍କ ନିକଟରେ ଅଭିନନ୍ଦନ ଜଣାଇଁ 'ସ୍ମୃତି' ପ୍ରକାଶରେ ଅଗ୍ରସର ହେଲି ।

ପରିଶେଷରେ ଉତ୍କଳର ବନ୍ଦନୀୟ ବୃଦ୍ଧକବି ଶ୍ରୀଯୁକ୍ତ ଶଶିଭୂଷଣ ରାୟଙ୍କ ଆଶୀଷ ପାଇଁ କବିବର ମହୋଦୟଙ୍କ ନିକଟରେ ମୋର ନମସ୍କାର କୃତଜ୍ଞତା ।

ଟିକଲି,
୭-୨-୫୨ ।                                        ଲେଖକ ।

# ଆଶୟ

'ସ୍ମୃତି'ର ପାଣ୍ଡୁଲେଖ୍ୟ ଦୁଇଥର ପାଠ କରି ମୁଗ୍ଧ ହେଲି । ବର୍ଣ୍ଣନାରେ କୃତିତ୍ୱ ଅଛି, ଛନ୍ଦରେ ପ୍ରାଣ ଅଛି, ଭାଷାରେ ପ୍ରବାହ ଅଛି, ଛନ୍ଦ ମଧ୍ୟ ସୁଲଳିତ, ପ୍ରବାହଶୀଳ ଓ ସହଜ । ଏ ପୁସ୍ତକରେ ନିପୁଣତା ସହିତ ପବିତ୍ର ପ୍ରେମର ସ୍ୱରୂପ, ପୋଷଣ, ବ୍ୟାପ୍ତି, ସ୍ୱଭାବ, ଲୀଳା ପ୍ରଭୃତି ପ୍ରାଞ୍ଜଳ ଭାଷାରେ ଗମ୍ଭୀର ଭାବରେ ବର୍ଣ୍ଣିତ । ରାଜକବି ମହୋଦୟଙ୍କ ଜୀବନପଥ ସର୍ବଦା କୁସୁମାସ୍ତୃତ ହେଉ ଏହାହିଁ ଆନ୍ତରିକ କାମନା ।

ନିଭୃତ ନିଳୟ,
ଧବଳେଶ୍ୱର,
୯-୯-୫୦ ।

ଶ୍ରୀ ଶଶିଭୂଷଣ ରାୟ ।

# ଉତ୍ସର୍ଗ

ସେଦନବନ୍ଧୁ !
ଜୀବନ-ପ୍ରଦୀପ
ଲିଭାଇଗଲ ଗୋ ଦୂରେ,
କାନ୍ତାର ପଥେ-
ତରୁଡାଳେ ବସି
କୁରର ଡଉ ଝୁରେ;
ପ୍ରୀତି ପଥେ ପଥେ
ନତ ନତ ଝରେ
ପୂତ ଜାହ୍ନବୀ ଜଳ,
ମିଳନ ଛନ୍ଦେ
ବିରହ ସାଧନା
ପବିତ୍ର ପରିମଳ;
ଅପୂର୍ବ ଅନୁଭୂତି—
ସ୍ମରଣ ତୀର୍ଥେ
ବାଢ଼ିଗଲି ଆଜି
କାନ୍ତ-କବିତା 'ସ୍ମୃତି' ।

'ନାଦ ନିଳୟ',
ଅକ୍ଷୟ ତୃତୀୟା,
୨୭-୪-୫୨ ।

ଜଗନ୍ନାଥ ଦେବ ବର୍ମା ।

ଉତ୍କଳର ବରପୁତ୍ର, ପ୍ରବୀଣ ଭାରତ ସେବକ
## ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ,
'ସ୍ମୃତି' ପଢ଼ି ଲେଖିଛନ୍ତି:—

'ସ୍ମୃତି' କବିତା ପୁସ୍ତକଟି ପଢ଼ିଲି । ଭଲ ଲାଗିଲା । କେତେ ଗୁଡ଼ିଏ ନୂଆ ଶବ୍ଦ ଆପଣଙ୍କ କବିତାମାନଙ୍କରେ ଦେଖିବାକୁ ପାଇଲି । ଆପଣଙ୍କ କବିତା ଶାନ୍ତ ଓ ମଧୁର । ଏଥିରେ ପ୍ରବାହ ପ୍ରବଳ ନୁହେ ସତ୍ୟ କିନ୍ତୁ ଚିତ୍ତ ପ୍ରସାଦ ଓ ପରିପୁଷ୍ଟି ଆସେ ତାହା ପାଠ କରି । ଅବଶ୍ୟ କବିତା ଗୁଡ଼ିକରେ ଯୌବନର ପିପାସା, ଦୁରନ୍ତ ଇଚ୍ଛା ସବୁ ଅଛି କିନ୍ତୁ ତାହାରି ଭିତରେ ଶାଶ୍ୱତକୁ ମଝିରେ ମଝିରେ ଛୁଇଁବାର କ୍ଷୁଧା ମଧ୍ୟ ରହିଛି । ଆପଣ ସଙ୍ଗୀତଜ୍ଞ । ତେଣୁ ଭାଷାକୁ ଗୀତର ମୂର୍ଚ୍ଛନାରେ ସଜାଇ ପାରିଛନ୍ତି। 'ଖୋଲିଦିଅ ପ୍ରୀତିବାସ, ସଜନି ଗୋ ତହିଁ ମାତି ବରିବି ଆସରି ନୂତନ ରସ' ଏଥିରେ ଆପଣ ବଡ଼ ସାହସ ଦେଖାଇଛନ୍ତି । 'ଏକଇ ବନର ପକ୍ଷୀ ଗୋ ଆମେ ବେନି, ଦୂରେ ଦୂରେ ଥିଲୁ ମୂକ କରମ ଯେନି'-ଏଥିରେ ପରିପକ୍ୱତା ଓ ବିଜ୍ଞତା ଆସିଛି । 'ହେ ନିତ୍ୟ ଯୌବନଯୁଗ୍ମ ! ଯେନି ଆଜି ପଦାବ୍ଜେ ପ୍ରଣାମ'-ବେଶ୍ ଭଲ ହୋଇଛି । ମୋର କଳ୍ପନା ତ ଏତେ ସୁନ୍ଦରକୁ ଯାଇ-ପାରେ ନାହିଁ । ଆପଣଙ୍କର କବିର ଭାଷା-ମଧୁର କବିର ଭାଷା । ଆଉ " ଭୁଲିଯାଅ " କବିତାରେ ମୁକ୍ତଛନ୍ଦ ବ୍ୟବହାର କରିଛନ୍ତି-ଏତ ମୋର ଅତି ପ୍ରିୟ । ସ୍ୱଚ୍ଛ ସାବଲୀଳ । 'ଭୁଲିକି ପାରିବି'ମଧ୍ୟ ସେମିତି । 'ଯୌବନେ ମୋର ନାହିଁ ଆଉ ପ୍ରେମ ଲାଳସା'-ଏ ବଡ଼ ସହଜ କଥା ନୁହେଁ । ବାର୍ଦ୍ଧକ୍ୟରେ ମଧ୍ୟ **Sex Urge**, ବାତ୍ସାୟନ କହିଛନ୍ତି'ଯୌବନଂ ସପ୍ତତି ପର୍ଯ୍ୟନ୍ତଂ । × × ×

# ପରିଚୟ

ଯୌବନ ବଂଧୁ ! ଅଙ୍ଗନେ ମମ
ରଞ୍ଜନେ ହେଲ ଉଷା -
ସରମେ ସରମେ ନଇଁ ଆସିଥିଲା
ପୁଷ୍ପିତ ତବ ଗଣ୍ଡ ;
ମଉନେ ମଉନେ ବଧୂଲି ଥରିଲା ,
ମରମେ ମରମେ ମୁକୁଳ ଫୁଟିଲା
ନମ୍ର ବୃହ୍ୱାଁଣୀ କହିଲା ଯେ ବାଣୀ
'ମଉନ-ପ୍ରଣୟ-ପ୍ରଶ୍ନ'-
ଯୌବନ ବଂଧୁ ! ଅଙ୍ଗନେ ମମ
ରଞ୍ଜନେ ହେଲ ଉଷା ।

# ସ୍ମୃତି

ସେଦିନର ସେଇ        ମଧୁ-ଲଗନରେ
ମଳୟ ବହିଲା ଯେବେ-
ଏ ମୋର ଗୃହାଁଣୀ        ସ୍ୱର୍ଣ୍ଣ ଢ଼ାଳିଲା
ପ୍ରଭାତର ନୀଳ-ନଭେ ;
ବିପିନ ବକ୍ଷ କଲା ସମାକୁଳ ,
କୋକିଳ ଗାଇଲା 'ବଉଳ ବଉଳ',
ଅମୃତ ସ୍ୱର        ଦ୍ରବିଲା ମୃଦୁଳ-
ପଲ୍ଲବେ ପଲ୍ଲବେ—
ସେଦିନର ସେଇ        ମଧୁ ଲଗନରେ
ମଳୟ ବହିଲା ଯେବେ ।

ବନ୍ଧୁଗୋ ମୋର        ନୟନେ ନୟନେ
ଅଞ୍ଜନ ଦେଲ ବୋଳି ,
କୁସୁମ ଲପନେ        ଚୁମ୍ବନ ରଚି
ନାଚିଲା ଏ ମୋର ଅଳି ;
ସସୀମ ଚିତ୍ତ ସହସା ଅସୀମ ,
ଫଗୁଣ ମତ୍ତ ପରିମଳ ସମ ,
ତନୁର ଲଳିତ        ଭୁବନେ ଭୁବନେ
ଝଲସିଲା ନବ ଝଳି—
ବନ୍ଧୁଗୋ ମୋର        ନୟନେ ନୟନେ
ଅଞ୍ଜନ ଦେଲ ବୋଳି ।

## ପରିଚୟ

ବଲ୍ଲକୀ ତାରେ ନିତ୍ୟ - ନୂତନ -
ମୂର୍ଚ୍ଛନା ଗଲା ଛୁଟି ,
ଗଣ୍ଡେ ଝୁଲିଲା ହୀରକ-ମୁକ୍ତା -
ବକୁଳ ପାଖୁଡ଼ା ଫୁଟି;
ଶୁଭ୍ର ଝରଣା-ମୁକୁରେ ନଳିନ
ପ୍ରସାଧନ ରଚେ ପ୍ରଣୟ ସାଧନ-
ପଥେ ପଥେ ଆଜ ପ୍ରଦୀପ ମାଳିକା-
ସ୍ୱପ୍ନରେ ପଳପାଟି-
କାହାର ଏ ମଧୁ ପରିଚୟେ ମୋର·
ବନ୍ଧନ ଗଲା ଛୁଟି !



# ଅନୁବନ୍ଧ

ପୂର୍ବ ଗଗନେ ଉଦିଲା ସ୍ୱର୍ଣ୍ଣରଥ
ଚିର ସୁନ୍ଦର ଅମୃତ, ମମ ପଥ;
ପ୍ରଭାତ ସିକ୍ତ ମଳୟ ପରଶେ
କୁସୁମ ନାଚଇ ହରଷେ ହରଷେ,
ଆସିଛି ମଧୁର କାଳ
ବାନ୍ଧଗୋ ସଖି ! ଏ ମମ କଣ୍ଠେ ବାନ୍ଧଗୋ ତର୍ବ ମାଳ ।

# ଅନୁବନ୍ଧ

ଅଗୁଆ ଗୀତଟି ପକାଉ ଟଗା ଅଜ ମନେ
ଅନ୍ତରେ ଯାହା ସାଇତିଛ ପରିଚ୍ଛନ୍ନେ ;
କୁମାରୀ ବୟସେ ଯେତେ କଳ୍ପନା
ସେସବୁ ଯେ ଆମ ମଧୁ ବିଭବନା;
ଖୋଲିଦିଅ ପ୍ରୀତିବାସ
ସଜନ ଗୋ ତହିଁ ନୀଡ଼ ବିରଚିବ ଅମର ନୂତନ ବସ ।

ତଟିନୀ ଜୀବନ ଡାକଇ ଚିହ୍ନ ଛାଦେ -
'ମଳୟ ମାରୁତ ' ଅଳି ଝଂକୃତ ନାଦେ ;
ଦଟଦଣି ଦିଶେ ରୁଚିର ଶ୍ୟାମଳ -
ଜୀବନ ରଚଇ ଜୀବନ ବିମଳ -
ପିକ ଗାଏ ଗଲା ମେଲି -
ପୀରତିକୁମାରୀ ମୁଗ୍‌ଧେ ଶୁହିଁଇ କଅଁଳ ପାଖୁଡ଼ା ମେଲି ।

ଗଗନ ଚରାଣେ ନୃତ୍ୟ-ନୂତନ ଛନ୍ଦେ
ଫଲ୍‌ଗୁ-କୁସୁମେ ଶାନ୍ତ ସଲିଳ ବନ୍ଦେ ;
ସାଗରେ ଭସାଇ ସୁନା ତରଣୀଟି
ନାଉରୀ ଗାଆଇ ଆମ ରାଗିଣୀଟି ;
ବିହଙ୍ଗ ଖେଳଇ ନଭେ
ନଭ-ଦରପଣେ ସୁତଳ ବଦନ କେଉଁ ସୁଖ ଅନୁଭବେ?

## ସ୍ମୃତି

ଚଉଦରେ ଆମ ସୁନ୍ଦର ମନଲୋଭା
ଘନ ଆନନ୍ଦେ ଉପଭୋଗି ଯିବା ଶୋଭା;
ଅଧରେ ଇଷିତ ବ୍ରୀଡା-ଅରୁଣିମା
ଏତନୁ— ମନର ସ୍ୱର୍ଣ୍ଣ ସୁଷମା
ଦେଖି ହସେ ମଧୁ ଉଷା-
ଆସଲୋ ସଜନ ! ସଜାଇଦଏ ମୁଁ କଣ୍ଠେ କନକ ଭୂଷା ।

ଏକଇ ବନର ପକ୍ଷୀ ଗୋ ଆମେ ଦୁଜନ
ଦୂରେ ଦୂରେ ଥିଲୁ ପୂର୍ବ କରମ ଘେନ;
ବହୁବାର ଦେଖା ଧରଣୀ-ବଳୟେ-
ଘେନ ପାରିନାହୁଁ ତଥାପି ହୃଦୟେ ;
ଅଭିଶାପ ଗଲା ତୁଟି -
ଏକଇ ବୃନ୍ତେ କୁସୁମ ଜନମେ ଆସିଲୁଗୋ ତେଣୁ ଫୁଟି ।

ଆସ ଆସ ସଖି ଜୀବନର ପ୍ରିୟତମା !
ଅଭିମାନ ତୋରେ ମାନୁଛିଗୋ ନବବ୍ୟମା;
ବସୁମତି ଆଜ ଡାକେ ସ୍ନେହାକୁଳେ -
ଅଦର ଖେଳୁଛି ଢେଉ କୂଳେ କୂଳେ;
ପ୍ରୀତି ହେଉ ପରିମଳ -
ବକ୍ଷେ ଗୋଟାଇ ନଅଁ ଗୋ ମିଳନ-ଅଶ୍ରୁ-ମୁକୁତା-ଫଳ ।



# ଅସୀମ ବନ୍ଦନା

ସତ୍ୟ ଶିବ ସୁନ୍ଦର ହେ ଡ଼ାଳ ଶିରେ
ପୂଣ୍ୟ ସୁଧା ଧାର
ଗାଇଯିବ ମୁକ୍ତ କଣ୍ଠେ ଅସୀମର
ସଂଗୀତ ଇସାର ।
ଛୁଟିଯିବ ଫିଟିଯିବ ଏ ଶୃଙ୍ଖଳ ,
ଜୀବନର କାର -
ସତ୍ୟ ଶିବ ସୁନ୍ଦର ହେ ଡ଼ାଳ ଶିରେ
ପୂଣ୍ୟ ସୁଧା ଧାର ।
ସୃଷ୍ଟିର ଅଜ୍ଞାତ କୋଣେ ବହୁଦୂରେ-
ଶୁଭଦ ଲଗନେ
ବାଜି ଉଠେ ଆହ୍ୱାନର ବଶ୍ୱବୀଣା
ଅସ୍ପଷ୍ଟ ସ୍ପନ୍ଦନେ ।

## ସ୍ମୃତି

ରାତ ସମ ନିର୍ବିକାର, ଅଦୃଶ୍ୟ ସେ
ଚିର ଶ୍ରୁତି-ଶ୍ରାବ୍ୟ
ଦୂର୍ବା ସମ ଥରି ଉଠେ, ଅଚଳ ମେ -
ସଦ୍ୟ ଅନୁଭବ୍ୟ ।
ଫୁରିଯାଏ ସେ ମୂର୍ଚ୍ଛନା, ଲତାସ୍ଫୁରିତ
ଲୀଳା ମନୋହର;
ଡେଇଁ ଚୂଳେ ଦ୍ରୁତ ଆସେ ସେହି ଧାରା
ସୃଜ ଅନୁସ୍ୱର ।
ଜ୍ୟୋତ୍ସ୍ନାଙ୍କିତ ମଧୁଶଯ୍ୟା ଆସ୍ତରଣ
ରଚନା ଉପରେ
ରଚି ଆସେ କାନ୍ତ କ୍ରୀଡ଼ା ନିରବଧି
ସ୍ୱର୍ଣ୍ଣ ଅଭିସାରେ ।
ସେଇ ଛନ୍ଦ ଚଳେ ଭାସିଯାଉ ଏଇ
ଯଉବନ-ଭେଳା
ମର୍ତ୍ତ୍ୟ ଶିବ ସୁନ୍ଦର ହେ ଢାଳ ଶିରେ
ପୂଣ୍ୟ ସୁଧା ଧାରା ।
ସତ୍ୟ ଶିବ ସୁନ୍ଦର ହେ ଦେଖ ଆଜ
ଧରଣୀ କପଟ--
ସ୍ୱପ୍ନ ପୁରେ ଭ୍ରମାଉଛ ଦେଇ ଜୀବେ
ମୃଣ୍ମୟ ଶକଟ ।

## ଅସୀମ ବନ୍ଦନା

ସକଳ ପାପ ସଞ୍ଚିବା ପାଇଁ ଡ଼ାକେ
ମେଲାଇ କପାଟ-
ଶୁଣ ଶୁଣ ହେ ମୂର୍ତ୍ତି ହେ ବୁଭୁକ୍ଷୁର
ବିକଳ କୁହାଟ ।
ଶ୍ମଶାନରେ ଲୋଟିଯାଏ ପୂତଗନ୍ଧ
ଶବ ମାଳ ମାଳ-
ବୀଭତ୍ସ ଏ ରଙ୍ଗମଞ୍ଚ - ଅଭିନୟ
ହେବ କେତେ କାଳ ?
ମହାକାଳ-ସ୍ରୋତ ଆଜ ଖାଇଯାଏ
ଧର୍ମ ଚାଡ ଚାଡ
କେତେ ମାନ , ଯଶ , ଧନ ଅକାତରେ
ବେକ ମୋଡ ମୋଡ ।
ପଥ ଘାଟେ ହାହାକାର, କେ ହେଉଛି
ରୁଦ୍ର ନର୍ତ୍ତନା-
କାର ସୁଧା ପାତ୍ରେ ପଡେ ହଳାହଳ
ବିଚିତ୍ର ସର୍ଜନା ।
ଜଳୁଅଛି ହୋମାନଳ, ପ୍ରାଣୀ ଯାଏ
ଝାଣି ହୋଇ ଆପେ –
ଲୁହଇ ସେ ସାଧନାର ପଙ୍କକୁଣ୍ଡ,
ରୌରବର ଯୂପେ ।

ଲୋଡା ନାହିଁ କ୍ଷଣିକର ଉଦ୍ଦୀପନା
ଏ ରୁଦ୍ଧ ଜୀବନେ,
ଲୋଡ଼ା! ନାହିଁ ଜଡ଼ତା ହେ ସୀମାହୀନ
ସୂଗର ଅୟନେ ।
ବାହିନଅ ଦୂରେ ଦୂରେ ବହୁ ଦୂରେ
ଏ ମୋର ତରଣୀ
ଶାନ୍ତ ନଭ ତଳେ ଦେଖାଇ ଦିଅ ହେ
ଅମୃତ ସରଣୀ ।
ଫିଙ୍ଗି ଦୂରେ ପାପ, ଗ୍ଲାନି, ଅବସାଦ,
ଦୈନ୍ୟ, ବ୍ୟଥାଭର—
ବାହିନିଅ ଏ ତରଣୀ ଅସୀମକୁ
ଆହେ କର୍ଣ୍ଣଧାର !
ଭୁଞ୍ଜ ତୃଣ-ବେଣୁ ରନ୍ଧ୍ରେ ଦିଅ ଫୁଙ୍କି –
ସୁଲଳିତ ତାନ
ସୃଜନର ଅଭିସାରେ ଉଠୁ ତହିଁ
ଶ୍ରୁତି ରସାୟନ ।
ପିଣ୍ଡରେ ମର୍ମର ଉଠୁ ନାଦବିନ୍ଦୁ
ମଧୁର ନିକ୍ୱଣେ,
ଊର୍ମିପରେ ଊର୍ମିମାଳା ବିକ୍ଷୋଭିତ
ତଡିତ-କମ୍ପନେ ।

## ଅସୀମ ବନ୍ଦନା

ତବ କର ସ୍ପର୍ଶେ ଯାଉଥିବେ ତରଳି
କର୍କଶ ପାଷାଣ,
ଘାସ ଗୁଚ୍ଛ ରସେ ଗାଉ ଆଗମନୀ
ଗୀତ ସମ୍ବୋଧନ ।
ହେ ମିଳନ ! ବକ୍ଷେ ମୋର ଉକୁଟାଇ
କମଳ ଚରଣ
ଯୁଗ ମଧ୍ୟେ ବକ୍ଷରେ ବେଗ-ରଶ୍ମି
କର ବକୀରଣ ।
ହେ ନିତ୍ୟ ଯୌବନ ଯୁଗ୍ମ ! ସେନ ଆଜ
ପଦାବ୍ଜେ ପ୍ରଣାମ—
ଆତ୍ମା ମୋର ପୂର୍ଣ୍ଣ ହେଉ, ଧନ୍ୟହେଉ,
ହେଉ ଅନୁପମ ।



# ଇଙ୍ଗିତ

ଆହା ଏ କୁସୁମମୟୂ ଝଲସିତ ପ୍ରହରେ
କେ ଆସଇ ଏ ଭୁବନେ ଛନ୍ଦତ ପୟୂରେ ?
ପଥେ ପଥେ ଶତଦଳ
ଫୁଟାଏ ଚରଣ ତଳ
ଚଉଦିଗ ଚହଟାଇ ଗୃମେଲୀର ଅତରେ -
ଆହା ଏ କୁସୁମମୟୂ ଝଲସିତ ପ୍ରହରେ ।

## ଇଙ୍ଗିତ

ନଶିଥିନୀ ଗଲା ଚୁମି ବିବସର ଅଧରେ -
କନକ ତରଣୀ କିଏ ଭସାଇଲା ସାଗରେ ?
କମଳ ପାଖୁଡା ଠେଲି
ମଧୁମତ୍ତ ଗିର ବୋଲି
ଅଳକ୍ତ ଆଳାପିଲେ 'ନବରସ' ରାଗରେ
ନଶିଥିନୀ ଗଲା ଚୁମି ଦିବସର ଅଧରେ ।

ନବରବି ଆଶ୍ଳେଷେ ପୁଲକିତ ଧରଣୀ ,
ମଳୟ ମୃଦୁ ପରଶେ ଶରମିତ ସରଣୀ -
ଶୁଭ୍ର ଆକାଶ ମେଳେ
ସ୍ବର୍ଣ୍ଣ କିରଣ ଖେଳେ
ନୟନେ ଇସାରା ଦିଅ କିଏ ତୁମେ ସଜନି !
ନବରବି ଆଶ୍ଳେଷେ ପୁଲକିତ ଧରଣୀ ।

ମୃଦୁ ମୃଦୁ ଗାନ ଗାଇ ଛପି ଛପି ଛପିକା!
ସମୀରଣେ ଦୋହଲାଇ ଅପଘନ-ଲତିକା
ଏକାକୀ ମଣ୍ଡନେ ଆସି
ସରମ ସିକ୍ତ ହାସି
ଭୁବନ ଦୁଆର ବୁକେ ମାରଇ ଯେ ଟିପିକା--
ମୃଦୁ ମୃଦୁ ଗାନ ଗାଇ ଛପିକା ଲୋ ଛପିକା ।

## ସ୍ମୃତି

ଫିଟିଗଲା ଏ କପାଟ କେଉଁ କର ପରଶେ ?
ଜୀବନ ଚଳେ ଜୀବନ ନାଚିଲାଗୋ ହରଷେ ;
ଆସ ଆସ ପ୍ରିୟତମା
କାବ୍ୟ - ଶ୍ରୀ ଚନ୍ଦ୍ରମା !
ପୟରେ ନୂପୁର ବାଜୁ ଝାଞ୍ଜିତ ସରସେ -
ଫିଟିଗଲା ଏ କପାଟ କାହା କର ପରଶେ ?

ମଧୁର ଏ ମଧୁମୟ ପ୍ରଶାନ୍ତ ପ୍ରଭାତେ
ଆଲୋକର ପଥଗାମୀ ବିଚିତ୍ର ମରତେ
ଫିଟାଅ ପୀରତି-ବାସ
ଅଧରେ କଳିକା-ହାସ-
ଆଜ ଯେ ନିଖିଳ-ପ୍ରାଣ ଭୋଗିଯିବା ଭୁବତେ
ଚିତ୍ତେ ମୋ ବାଜ ଏଗୋ ଜୀବନର କବିତେ !



## ନୀଡ଼ ସଙ୍ଗୀତ

ସୁଧା ସମୀର ଏବେ ଧରଣୀ ତଳେ
ଶୁଭ୍ର ସଙ୍ଗୀତ ଗାଇଉଠେ ସୁପ୍ତ ରୋଳେ,
ବିଶ୍ୱ - ବୀଣା
ଢ଼ାଳେ ପୀୟୂଷ-କଣା ;
ଆଜ ଧୂପ ଦୀପ ତୃଣ କୁଟୀରେ ଜଳେ -
ମଧୁ ସୁଧା ସମୀର ଏବେ ଧରଣୀ ତଳେ ।

## ସ୍ମୃତି

ମୁଗ୍ଧ ନୟନେ କେ ଗୋ ଗୀରବେ ଚୁହିଁ
ମଧୁ ଗନ୍ଧବାଣୀ ଖୋଜେ କାହାର ପାଇଁ ?
ଆସ ଆସ ମଳୟ ,
ନଅ ନଅ ହୃଦୟ ,
ତବ ଚରଣେ ଫୁଟୁ ପଲ୍ଲବନର କଇଁ
ଚାହୁଁ ମୁଗ୍ଧ ନୟନେ କେଗୋ ଗୀରବେ ଚୁହିଁ ।

ପଥେ ପଥେ ଧାଏ ଆଜ ଚେଟକର ମଥା,
ତା'ର ଅନ୍ତରେ ଲାଗିଛି ଯେ ପୀରତି ବ୍ୟଥା,-
ଡାକେ ଆସ ଗୋ ପ୍ରିୟ ,
ଘେନ ମୋର ପ୍ରଣୟ ,
ଧରା ଦଅଇ ମତେ ତା'ର ଶୁଭ ବାରତା , -
ବନ୍ଧ ପଥେ ପଥେ ଧାଏ ଆଜ ଚେଟକର ମଥା ।

କୁସୁମିତ - ଉପବନ କୋମଳ ବୁକେ
କୋକିଳ ଫୁଟାଏ ଗିର କେତେ ପୁଲକେ ;
ପାଇ ପ୍ରିୟା - ମିଳନ
ରଚେ ପୂରବୀ ଗାନ
ତନୁ ବକଶି ଉଠେ ଅତନୁର ଆଲୋକେ -
ଆଜ କୁସୁମିତ-ଉପବନ କୋମଳ ବୁକେ ।

# ନୀଡ଼ ସଙ୍ଗୀତ

ଝର ଝର ଝର ଝର ଝରଣା ଝରେ
ଗୃରୁ ଗୁଞ୍ଜରଣେ କେତେ ସରମଭରେ ;
ମନ ହରଷେ ତା'ର
ଟାଣେ ଅଶ୍ରୁ-ଗାର ;
ପାଦ ଛନ୍ଦତରେ ଗୃଲେ ଶଇଳ ଧାରେ –
ମୃଦୁ ଝର ଝର ଝର ଝର ଝରଣା ଝରେ ।

ଦଗଦଗ ସୁନ୍ଦର ଫୁଟଲ ଦଶଇ ,
ମଳୟ – ବୀଚେ ପରିମଳ ନାଚଇ ;
ତାର ଖଚିତ ନଭେ
ମଧୁ ବେଦନା ଦ୍ରବେ;
ନୀଳ – ଜଳ – ମୁକୁରେ ଗୃହେଁ କୃଷ୍ଣ-କଇଁ –
ଦୂରୁ ଦଗଦଗ ସୁନ୍ଦର ଫୁଟଲେ ଦଶଇ ।

ମଉନେ ଗୃହେଁ ଏଇ ଶୋଭା , ସୁଷମା
ମୋର ହୃଦୟୁ ଯୋଉଁଠି ଆସେ ଘନ କାଳିମା ;
ପ୍ରାଣ କା'ରେ ଖୋଜଇ
ଆଖି ପାଣି ବୁହାଇ
ପୋଛୁଦେବ ସେ ମୋର ବିରହ-ବଧୂ ଭ୍ରମା –
ଆହା ମଉନେ ଗୃହେଁ ଏଇ ଶୋଭା, ସୁଷମା ।

## ସ୍ମୃତି

ଛିନ୍ନ କରିଛ କେଉଁ ଆତ୍ମା ମୋର ?
ବ୍ୟଥା କଂପନରେ ଥରେ ଶୁଷ୍କାଧର ;
ଅତି ସଂଗୋପନେ
ବୀଣା ବାଜେ ଗହନେ
କାହା ଧ୍ୱନି ଆନେ ସେ ଯେ କହ ଏତେ ବଧୂର ?
ଆହା ଛିନ୍ନ କରିଛ କେଉଁ ଆତ୍ମା ମୋର ?

କିଏ ସେ ଡାକେ ମୋତେ ନୟନ ଠାରି
ଦୂର ନଭ - ପଥରୁ ପ୍ରାଣ ସୂତ୍ରଧାରୀ ?
ଆଜ ଅସୀମ ଦେହେ
ମିଶିଯିବ ସ୍ନେହେ
ସେଇ ଚରଣ ତଳେ ତରୀ - ସଙ୍ଗ ଧରି -
ଆଜ ଅମର ଗୀତେ ବାନ୍ଧ ଜୀବନ-ତରୀ ।



# ବିରହ ବୀଣା

ଗୋଧୂଳି ଲଗନେ ଶିଖର ଉଠଇଁ ବିରହ ବୀଣା ;
ରୁଦ୍ଧ ଅବସାଦ ଦୁଃଖଭରା ଗୀତ , ନାହିଁ ଫୁରୁଣା ।
କାଲି ବୀଣା ଗାଉଥିଲା ଗୋ ହସି
ପ୍ରିୟା ମଧୁ , ଆଳାପନାରେ ରସି
ଆଜି ଉଠି ତହିଁ ତିକ୍ତ ପ୍ରତିଧ୍ୱନି ହୃଦୟୁ ହଣା
ଝରଇ ଲୋତକ ପ୍ରେମ ପଥେ କରେ ମାନସ ବଣା ।

# ସ୍ମୃତି

ବସନ୍ତ ଯୌବନ ଚନ୍ଦ୍ରିକା - ବିତାନ - ଗଗନ ତଳେ
ବିଜନେ ବସି ସୁଖେ ରାଗ ଗୁରୁକେଶୀ ଆଳାପି ଦୋଳେ ;
ଗାନ୍ଧାର ପଞ୍ଚମ ମଧ୍ୟମ ସ୍ୱରେ
ଉଦାତ୍ତ ଝଙ୍କୃତ କ୍ର ସ୍ୟା କ୍ରମରେ
ଛିପି ମୋ ଅଙ୍ଗୁଳି ବିପଞ୍ଚୀ ପ୍ରବାଳେ ଗର୍ଜିବା ବେଳେ
ମଧୁର ଚୁମ୍ବନ ଦେଇ ରେଖା ଖେଳାଇଲ କପୋଳେ ।

ଆଜ ଏ ବିଷାଦ-ବିଧୁର ବୀଣାର ଛିଡ଼ିଛି ତାର ;
ଅପଶ୍ରୁତି ନାଦ ବୁକୁରେ ବିଞ୍ଚୁଛି ଉଗ୍ର ଜହର ;
ବଜାଉ ବଜାଉ ବଲ୍ଲକୀ କରେ
ନ ଚଳୁଛି ଆଉ ଅଙ୍ଗୁଳି ଥରେ ;
ଅବଶ ଶରୀର ଥରଇ ନୟନ ବହୁଛି ନୀର ;
କରୁ ଖସି ବକ୍ଷୁ ତଳେ ସୁପ୍ତ ଆଜ ବିତନ୍ତ୍ରୀ ମୋର ।



# ମୀମାଂସା

ଅର୍ଦ୍ଧମୁକ୍ତ ବାତାୟନ ଧାରେ ବ୍ୟାକୁଳରେ କେ ରହିଛନ୍ତି ଚାହିଁ ?
କହ କବା ନବଘନ ତହିଁ ? କେଉଁ ଅଜଣାର ସ୍ପର୍ଶ ପାଇଁ ?
କାହାର ବିଜୟୋତ୍ସବ ଭାବି ଚିତ୍ତ ତାର ଆଜି ସ୍ୱପ୍ନ ମଗ୍ନ ?
ପୁଲକିତ ପଡ଼ନାହିଁ ଥରେ , ଅନିନ୍ଦିତ ନେତ୍ର-କୋଣେ ଶସ୍ତ ।
ଚଉଦିଗ ସୁପ୍ତ , ବିଜଡ଼ିତ —
ପ୍ରଶାନ୍ତର ମାଳାଶ୍ରୀବେ ଦିଗ୍‌ବଳୟ ବନ୍ଧିତ ।

# ସ୍ମୃତି

ନଭସର ଚାନ୍ଦ୍ର ଶାଳେ ଆଜ ନେଲେ ଯେ ଆତିଥ୍ୟ ତାରାପୁଞ୍ଜ;
ଝିଲ୍ଲିବରୀ ଝରଚନ୍ତୁ ଅହା କ୍ଷଣିକର ଦୀପ୍ତ ମାଳ କୁଞ୍ଜ ;
ମୃଦୁ ମୃଦୁ ଗୀତ ଗାଇ ଗଲେ ବିଶ୍ୱ, ବକ୍ଷେ ପ୍ରଚୁର ପ୍ରଣୟ ;
ଜୀବନ ରଚଇ ଅଭିସାର-ହାସ୍ୟ ସେ ଯେ କେଉଁ ଅଭିନୟ ?
ପଲକତ ପଡନାହିଁ ଥରେ—
କେଉଁ ପ୍ରୀତି ପାଇଁ ତୁ ରେ ଅଛୁ ଉଜାଗରେ ?

ଚିତ୍ତ ତ ନୀଳାନ୍ତରୀକ୍ଷେ ଉଦେ ସପ୍ତମୀର ରୌପ୍ୟ ଖଣ୍ଡ ଶଶୀ ;
ଅଖଣ୍ଡିତ ଆତ୍ମା ସମ ଆସେ ଶୁଭ୍ର ଜ୍ୟୋତ୍ସ୍ନା ହୃଦ ମଧ୍ୟେ ପଶି ;
ଧରଣୀ ପ୍ରାଙ୍ଗଣେ ଲୋଟେ ଧୀରେ କଉମୁଦୀ ଝରହାସୀ ପ୍ରାୟ;
କେ ଜାଣେ କାବ୍ୟ-ନାୟକ ମନ ? କବର ଏ ସିନା ଅଭିପ୍ରାୟ-
ଜଗତ ଏ ବିବର୍ତ୍ତନ ବାଦ—
ବାଧା-ବିଘ୍ନ, ସୁଖ- ଦୁଃଖ, ପ୍ରାଣ ପରମାଦ ।

ତାରାପଥେ ଝରି ଆସେ କେଉଁ ରାଇଜର ସ୍ୱଚ୍ଛ ପ୍ରସ୍ରବଣ ,
ନିଶବଦ ନିଶି ବୁକେ ଲାଗେ କଳ୍ପନାର ମୁକ୍ତ ପ୍ରସାରଣ ,
ନୀଳ ଶୈଳ ଚୂଳେ ଫୁଟେ ଭାଷା ଅଗଣିତ ଅସ୍ପଷ୍ଟ ଗମ୍ଭୀର-
ମିଳନର ମହାମନ୍ତ୍ର କି ସେ ? ଅଶ୍ରୁତର ସକରୁଣ ଗିର ?
ପଲକତ ପଡନାହିଁ ଥରେ
କଠିନ ଏ ବାନ୍ଧ ପ୍ରାଣ ପଡେ ଭରମରେ ।

ଗବାକ୍ଷର ପାର୍ଶ୍ୱେ କୃଷ୍ଣଚୂଡ଼ା ନବ ପତ୍ରାବୃତ , ପୁଷ୍ପଭର-
ଧରା ବକ୍ଷେ ସୃଜେ କ୍ରୀଡ଼ାରତ ସ୍ୱପ୍ନାଲୋକ ଜଗତ୍ , ସୁନ୍ଦର ;
ଚରାଚର ବାହ୍ୟେ ସ୍ତବ୍ଧ ଶାନ୍ତ,ଅନ୍ତରେ ଲୁକ୍‌କାୟିତ ବେଦନା !
ଚିରନ୍ତନ ଭେଦାଭେଦ ସୃଷ୍ଟି — ସର୍ଜକର ଅଦ୍ଭୁତ କଳ୍ପନା !
ଦୂର୍ବା ପରେ ଝରିଆସେ ଜ୍ୟୋତ୍ସ୍ନା-
ନିରନ୍ତର ବ୍ୟାକୁଳିତ , ଅତୃପ୍ତ କାମନା !

ରହୁଁ ରହୁଁ ଇନ୍ଦୁ ଗଲା ଲୁଚି ଶୀର୍ଣ୍ଣ-ଶୁଭ୍ର-ଖଣ୍ଡ-ମେଘ-ଫାଙ୍କେ;
ବ୍ୟୋମ ପଥେ ଉଡ଼ିଗଲା ପକ୍ଷୀ ନିର୍ନିମେଷେ ରହେଁ ଆଁଜବାଙ୍କେ-
ଗବାକ୍ଷ ମୁକୁଳି ଗଲା ଧୀରେ ଅନ୍ତରର ଗଭୀର ନିଶ୍ୱାସେ ;
ବେପଥୁ-ଶ୍ଳଥ ଶୀତଳ କର ଅଶ୍ରୁପ୍ଳୁତ ଗଣ୍ଡକୁ ଆଶ୍ୱାସେ ;
କେଉଁ ଅନୁଭବ ପାଇଁ ସତେ
ଅନାଇ ରହିଛି ସେ ଯେ ବାତାୟନ ପଥେ ?

ବୀଣାର ତନ୍ତ୍ରୀ ମିଳନ ରତି ଯତନେ ସାଇତି ଥିଲା ଯେ ନାୟକ-
ପ୍ରିୟା ଆଗମନେ ଗାଇ ଯିବ ଦେଇ ଅଭ୍ୟର୍ଥନା ତରୁଣ ଗାୟକ ।
ସିକ୍ତବାତେ ଶ୍ରୁତିଯୁକ୍ତ ତନ୍ତ୍ରୀ ହେଲା ମେଳଭ୍ରଷ୍ଟ ତୂଳୀଶଯ୍ୟାପରେ-
ମନ୍ଦର ଯେ ଉତ୍ସୁକ ଅଙ୍ଗୁଳେ , ଛୁଟିଗଲା ତାର ଅକାତରେ-
ପୁଲକିତ ପଡ଼ିଲା ଅଧୀରେ—
ସ୍ୱପ୍ନମୟ ଭବ-ପୁରେ ପ୍ରିୟା ନାହିଁ କରେ !

# ସ୍ମୃତି

ବ୍ୟର୍ଥତାର କଷାଘାତେ ଶତ ଅବଶ ଭଜିଲା ମ୍ରିୟମାଣେ—
ଆକାଶର ଗତିଶୀଳ ମୁକ୍ତ ବିହଙ୍ଗର କିଏ ଡେଣା ହାଣେ ?
ଅସହାୟ କ୍ଷୁବ୍ଧ ଶିଶୁ ତୁଲ୍ୟ ଧୂଳିଲୀନ ବିଳାପ ଗାୟନ ;
ମର୍ମେ ତାର ବୁହାଇଛି ଏକ ବାସ୍ତବର ନିଷ୍ଠୁର କ୍ରନ୍ଦନ ;
କବି ପ୍ରାଣେ ଦେଲା କେ ସମ୍ବଳ ?
ଜୀବନ୍ତ କବିତା ମଧ୍ୟେ କାହିଁ ଥିବ ଛଳ ?

ହୃଦୟର ମମତା ବନ୍ଧନ , ପାଶବଦ୍ଧ ନିଭୃତ ନିବିଡ—
ଖୋଜି ବୁଲେ ଶୀର୍ଣ୍ଣ ଦୃଷ୍ଟି ଇତସ୍ତତ ଚିରାଶ୍ରିତ ନୀଡ ;
ନିଳୟେ ଯେ ଲାଗିନି ପ୍ରଦୀପ , ଅନ୍ଧକାର ଘେରିଅଛି ଖାଲି ;
ଘୂର୍ଣ୍ଣ ଶ୍ୟାମ ମିଶିଯାଏ ନଭେ ଯେ ପଥେ ସେ ଯାଇଛି ଗୋ ଚାଲି;
ବାଷ୍ପରୁଦ୍ଧ କଣ୍ଠ ଫିଟିଯାଏ—
ପ୍ରିୟାର ଯାତ୍ରା ସଙ୍ଗୀତ ନବ କବି ଗାଏ ।



# ଶେଷ ମୂର୍ଚ୍ଛନା

ଛିଥିଲ ଶାନ୍ତ ଅମ୍ବରେ     ମଉଳ ମୃଗାଙ୍କ ଝୁରେ ,
ଶେଫାଳ ସମୀରେ ଥରେ ବରଷ୍ଟ ଭ୍ରାସେ ;
ଭୂତ ଦୁର୍ବାଦଳ ଚୂଳେ     କୁନ୍ଦେନ୍ଦୁ ଭୁଷାର ଛଳେ,
ରଜମା ଘଣୀ କ ଡ଼ାଳେ ଅଶ୍ରୁ ବରସେ ;
ବଧିର ଏ ବଧାନ ଦେନ
ଆତଜାତ   ଧରଣୀରେ  ନର କରଣୀ ।

# ସ୍ମୃତି

ସିକ୍ତ ଯଉବନ ତାରେ          ବାଜିଲା ମଧୁର ସ୍ୱରେ
  ମୃତ୍ୟୁର ପ୍ରଚ୍ଛନ୍ନ ଶରେ ବିଷାଦ ଗୀତ ;
ତାହାରି ମୂର୍ଚ୍ଛନା ଧରି          ଗାଇଲି ଗୋ ସୁକୁମାରି !
  ବିନ୍ଧିଲା ହୃଦୟ ଚିରି ପ୍ରଖର ସ୍ୱାନ୍ତ ;
      ଘାଟେ ଅପଘନ ମଳନ
  ବିବଶ ହେଲା କି ସତେ ଶୁଭ୍ର ନଳନ ।

ନଗିଳ ବିରହ - ଦୀପ          ଲଭି କା'ର ଅଭିଶାପ
  ଜଳିଲା ଗୋ ଦହି ଦହି ମୋ'ର ଅନ୍ତରେ ;
ଢେଳିଲି ଧରଣୀ କୋଳ          ନେହ କରି ଛଳ ଛଳ
  ତୁଟାଇ ପ୍ରୀତି - ମୃଣାଳ ମରଣ ଧାରେ ;
      ବିମ୍ବାଧରେ ବିଦାୟ ରେଖା
  ବିଦ୍ୟୁଲ୍ଲତା ସମ ଲିଭେ , କ୍ଷଣିକ ଲେଖା ।

ମିଳନେ, ସୀମନ୍ତ ଶିରେ          ଯତନେ ଯେ କର ଧରେ
  ଆଙ୍କିଲା ବନ୍ଧୁ ସିନ୍ଦୂରେ ମଧୁ ମଙ୍ଗଳେ ,
ଆଜ ସେ କର କାହିଁକି,          ଧନ୍ନୁରେ ଦହିଲା ନକ
  କେମନ କୁଙ୍କୁମ ଲେଖି ଦେଲା କପାଳେ
      କ୍ଷତ ବୁକୁ ତଳ ରୁଧିର
  ଜୀବନ ସରଣୀ କଲା ପିଚ୍ଛିଳତର ।

## ଶେଷ ମୂର୍ଚ୍ଛନା

ଶତ କଳ୍ପନା ବନ୍ଧେ        ମଳାଇଥିଲି ଆନନ୍ଦେ
ଆଶାର ବଲ୍ଲରୀ ଛନ୍ଦେ ସୁଧା ସରାଗେ ;
ଆକାଶ - କୁସୁମ ସମ        ହେଲା ତିକ୍ତ ପରିଣାମ,
ଖାଲି ତା' ସ୍ମୃତି ନିର୍ମମ ହୃଦୟେ ଜାଗେ ;
ବ୍ୟର୍ଥ ମୋର ପୂଜା ଯତନ
କୋମଳ ପରାଣ ଲଭେ ଅହି ଦଂଶନ ।

ଯେଉଁ ଅଜଣା ଅୟନେ        ଯାଇଛ ମୁକ୍ତ ହୃଦୟେ
ଝରାଇ ଶୂନ୍ୟ ଗହ୍ୱନେ ଚରଣ ରେଣୁ ,
ସେଇ ପଥ ଅନୁସରି        ବାହୁଛି ଦଦରା ତରୀ
ବଜାଇ ବ୍ୟଥା- ମାଧୁରୀ ବିରହ ବେଣୁ ;
ସାଥି ହରା କପୋତ ସମ
କାନ୍ଦେ ମୋ ଛିନ୍ନ ପରାଣ ଦିବା ତ୍ରିଯାମ ।



# ନିସର୍ଗ ସଙ୍ଗୀତ

ଚଞ୍ଚଳ ବସନ୍ତର ଚାନ୍ଦଣ ମହୋତ୍ସବେ
କୋକିଳ କୁହୁତାନ ଛୁଟିଲା ଅଭିନବେ ।

ତୁମେ ସେଇ ମୋ ପ୍ରିୟା କଲି ମଧୁ ଅର୍ଚ୍ଚନା
ଅଧର ପୁଟେ ଭରି ସୋହାଗ ଅଭ୍ୟର୍ଥନା ।

ଚିରନ୍ତ ପିଣ୍ଡେ ଥାପି ଚୂତ ପ୍ରଣୟ ପ୍ରାଣ
ନୟନେ ନଚାଇଲ ମଳୟ ପ୍ରସ୍ଫୁରଣ ।

କୁସୁମେ ଦେଲ ଭରି କନକ ମନୋରମା
ସବୁଜ ଦୁର୍ବାଦଳେ ନବୀନ ଶ୍ୟାମଳିମା ।

କାହାର ବକ୍ଷେ ଦେଇ ଫୁଟାଇ ଇନ୍ଦୀବର ;
ମରୁ ପ୍ରାନ୍ତେ ବାହିଲ ମଧୁର ବେଣୁ ସ୍ୱର ।

ସେଇ ତୁମେ ମୋ ପ୍ରିୟା ଯା' ପାଇଁ ଗାଏ ଗୀତ ;
ପ୍ରତିମା ଆଙ୍କିଥିଲ ଯା' ହୃଦେ ଅବିରତ ।

ସେଇ ତୁମେ ମୋ ପ୍ରିୟା ଯା' ପାଇଁ ଏ କବିତା;
ଅରୁଣାକାଶେ ନିତି ଯାଉଛି ମୋ ଦେବତା ।

ଅନ୍ତିମ ବରମାଳ ଲମ୍ବାଇ ମୋର ଗଳେ
ଅନ୍ତିମ ନିଦ୍ରା କଲ ବନ୍ଧୁର ଧରା କୋଳେ ।

ପ୍ରୀତ କୁସୁମ ତହିଁ ଜୀବନ୍ତ ଅଫୁରନ୍ତ ;
ଫୁଟାଇ ଦେଇ ସଖି ଜୀବନ-ସୁଖ-ବୃନ୍ତ ।

ଗତ ବରଷ କାଳ ଅଙ୍କିତ- ସ୍ମୃତି- ମାଳା
ହୃଦୟ ତଳେ ରଚେ ବିରହ ରୁଦ୍ର ଲୀଳା ।

ନୈସର୍ଗିକ-ସଙ୍ଗୀତେ କରଇ ଆଲୋଚନା ,
ବଧୂର ହୃଦେ ଭରି କରୁଣ କ୍ରନ୍ଦ ବେଦନା ।

ଭଗ୍ନ ବେହେଲା ମୋର ତୋଳେ ଝରୁନ ସୁର;
ଅପସୃତ ନିନାଦେ ଛୁଟିଛି ତନ୍ତ୍ରୀ ତାର ।

କେ ଦେବ ତହିଁ ପୁଣି ପ୍ରଣୟର ଚେତନା ?
ମୋ ହାତେ ଅଛି ସେତ ଗାଇବାକୁ ବେଦନା ।

# ସ୍ମୃତି



ଗଲ୍ ସେ ଗଲ ପ୍ରିୟା ସମାଧି ତଳେ ମିଶି ;
ଜୀବନେ କଲ୍ ମୋତେ କବର-ଧୂଳି-ରାଶି ।

ବୁକେ ଜଳାଇ ଗଲ ଅଖଣ୍ଡ ମହାଦୀପ
ସେ ଦୀପ ତଳେ ଆଜ ଭୋଗଇ ଅଭିଶାପ ।

ଅଶ୍ରୁ ଜଳ ବିରହକୁ ଦେଲ ଗୋ ପୁରସ୍କାର
ବିରହୀ ଗାଏ ଗୀତ ଢାଳି ସେ ଅଶ୍ରୁଧାର ।

ଜୀବନେ ଅଛି ମୋର ଆଜି କି ଦଶା କହ ?
ହାୟ୍ ବିଧାତା ! ଏହି କଷ୍ଟ କି ଦୁର୍ବିଷହ !



# ଅଶ୍ରୁ ସାଧନା

ଭୁବନେ ଯେତେ ମଧୁ ଲହରୀ ନାଚଇ ତାଳେ ,
ଚନ୍ଦ୍ରକା କୋଳେ, ଖଗନ ମେଳେ, ସମୀର ଦୋଳେ,
ବାତ-କଂପିତ-ମାନ୍ଦାର-ଘାସେ ,
ପ୍ରାତ - କମଳ - ଇଷିତ -ହାସେ ,
ସବୁଙ୍କି ବ୍ୟର୍ଥ ପ୍ରିୟା ଚହନେ ପ୍ରୀତି ଝଫଳେ ,
ଭୁବନେ ଯେତେ ମଧୁ ଲହରୀ ନାଚଇ ତାଳେ ।

## ସ୍ମୃତି

ବିଷାଦ ସ୍ୱରେ ବଜିଲେ ବାଜେ ଖେଦ ରାଗିଣୀ ,
ଶୃଙ୍ଗାର ସୁରେ ନଶୁଣି ତୁମ ଲଳିତ ବାଣୀ ,
ପ୍ରଣୟ ସାଜ ନୋହୁଛି ଲୋଡ଼ା ,
ମଞ୍ଜୁଳ ଯାଏ ମଲ୍ଲୀ ପାଖୁଡ଼ା ,
ଅଳି ଫୁଲ୍ଲ କୋକିଳ କଳ ଦେଉଛି ହାଣି ,
ବିଷାଦ ସ୍ୱରେ ବଜିଲେ ବାଜେ ଖେଦ ରାଗିଣୀ ।

ନିଷ୍ଠୁର ଯେବେ ଦିଏ ଆଘାତ କୋମଳ ବୁକେ ,
ରୋଧି ଦିଅ ହେ ଅସିର ଧାର ସ୍ନେହ-ଫଳକେ ;
ହୃଦୟ ମୋର କର ବନ୍ଦନା ,
ଢାଳ ଯେ ସଖି ସମବେଦନା ,
ଆଜି ସେ ଭାଗ୍ୟ ନାହିଁ କପାଳେ, ମରଇ ଶୋକେ ,
ଜୀବନ ଆଜି ଥରାଇ ମୁଁ ଯେ କୁରର ଡାକେ ।

ଧାରା-ଶ୍ରାବଣ , ଶିଶିର ନିଶି , ନିଦାଘ-ରାତି ,
ପ୍ରିୟା ପରଶ ବିହୁନେ ସତେ ପିବକ ବାତି ?
ବକ୍ଷ-ସାଗରେ ବାହୁଛି ତରୀ
ଉନ୍ମାଦ ନୃତ୍ୟେ ଉଠେ ଲହରୀ,
ଜୀବନେ ଝଞ୍ଜା ବହଇ ଠାଣେ ଚଳାଇ ଘାତ ,
ଭ୍ରାନ୍ତ-ପଥିକ ଆଜି ମୁଁ ବନ୍ଧୁ ନାହିଁ ମୋ ସାଥୀ ।



## ବିଷାଦ ଆରତି
(ସଙ୍ଗୀତ)

ଛଟିଣି କଳ କଳ ତରଣୀ ଝଲମଲ
ଦରଜ-ବୁକେ ଆଜି ବେଦନା ଢ଼ାଳେ ,
ଜୋଚ୍ଛନା ଢ଼ଳ ଢ଼ଳ ବଉଦ କୋଳେ
ଆଜି
ରଙ୍ଗେ ଭଙ୍ଗେ ଖେଳେ ଦୁର୍ବାଦଳେ ।

## ସ୍ମୃତି

ସମୀରେ ମିଶି ଗାଏ ସ୍ୱରନ୍ଧ୍ର ଗୀତି
ଦୂର ବରଷର ଅଜ୍ଞାତ ସ୍ମୃତି ;
ସମାଧି ତଳେ ପ୍ରଦୀପ ଜାଳେ
ଶେଷ ଜୀବନର ନୟନ ଜଳେ ।

ଗୋଧୂଳି ବେଳେ ବାଜେ ସ୍ୱରନ୍ଧ୍ର ବେଣୁ ;
ଝରାଇ ବୁକୁ ତଳୁ   ରୁଧିର - ରେଣୁ ,
ରୁଧିର-ରେଣୁ ;
ଝଡ ପବନେ ମାଡ ଉଠଇ ଥରି ,
ତାଳେ ତାଳେ ନାଚେ ଜୀବନ-ତରୀ ;
ମାଗେ ବିଦାୟ
ମାଗେ ବିଦାୟ
ଶେଷ ପ୍ରଣୟର ଚକ୍ରବାଳେ ।



# ପରିତାପ

ପଉଷର ପ୍ରଦୋଷରେ
ନୀଳ-ନଭ- ନକ୍ଷତରେ
ବାରବାଣୀ ରେଖା ଆଜ ଦଶିଲା ;
ସ୍ମୃତି କା'ର ଅନ୍ତରେ କଷିଲା ?
ବନ-ତରୁ-ଲତା-ତିର
ଶିର-ଶିର ଝିର-ଝିର
ଝରିଲା ଯେ ଦୁର୍ବଳ ମୟୂଖ ;
ହୁଡିଯିବା ପଥ କାହିଁ ସଳଖ ?

# ସ୍ମୃତି

ପ୍ରିୟଙ୍ଗୁ ଲତା ଧୀରେ
ଉଞ୍ଚ ହୋଇ ନତ ଶିରେ
        ନେତ୍ର କୋଣରେ ତାର ଅଳପ
        କହୁଛି କି 'ତୁମ ପଥ କଳପ' ।
ଘବାବେଶେ ଥରହର
ଆଶାସ୍ଫୁରିତ ଅନ୍ତର-
        କାସାରେ ନଇଁଲା ସାରସ ମୁଖ ;
        ଥକଲା କ୍ଳାନ୍ତ କେଉଁ ପଥିକ ।
ଚଞ୍ଚଳବେଗେ ଅନ୍ଧାର
ଚଳାଇ ଚରଣ ତା'ର
        ଆସିଲା ତନୁକୁ ଧୀରେ ପରଶି ;
        ନିଃସ୍ୱ ଯେ ତାକୁ କିଏ ଡରେକି ?
ହଜବା କେତେ ବାରତା-
ପୂଣ୍ୟ ପ୍ରଣୟ ଗୀତା-
        ତମିରେ ତା' ସ୍ମୃତିଟି ଯେ ଉଜ୍ଜ୍ୱଳ
        ମାନସୀର ସେ ନୟନ-କଜ୍ଜ୍ୱଳ ।
ଅତୀତର କଠୋରତା
ଯା'ରେ ଦେଇଥିଲା ବ୍ୟଥା-
        ଆଜ ପାଲଟିଛି ଅତି କୋମଳ-
        ଶୈବାଳ ସମ ମୃଦୁ ପିଚ୍ଛିଳ ।

କେତେ ଘୋର ଅପମାନ-
କରି ତା'ଙ୍କୁ ପ୍ରତ୍ୟାଖ୍ୟାନ-
ନୟନୁ ବିକଳ ଲୁହ-ଝରଣା
ଝରାଇଥିଲି ନବନ୍ଧ କରୁଣା ।
କେତେ ଯେ ପୀରତି ତା'ର-
ନକରି ହେ ସମାଦର -
କେତେ ହିତ କଥା ଭଲ ନପାଇ
ପାଦେ ଠକଠି ଆସିଲି ପଳାଇ ।
ମୋ ଦୁଃଖେ ଯେ ଦୁଃଖିତ ,
ସୁଖେ ଥିଲା ହରଷିତ
ତା'ଙ୍କୁ ମୁଁ ଭ୍ରମ ବୁଝିଲି ସନ୍ଦେହେ ,
କପାଳ ଯେ ମୋର ସଖା ମନ୍ଦହେ ।
ଅପର କୋଳାହଳେ
ମାତିଲି ହଳାହଳେ -
ଶୁଣିଲି ନାହିଁ ତା' ସ୍ନେହ ଡାକଯେ
ଅନୁତାପ ଖାଲି ଆଜ ବିରାଜେ ।
ନୟନ-ଜଳର ମୂଲ
ଏତେ କଲି କଲବଲ-
ଯାତନା ଦେଇଛି ଫୁଲ ଗୁନ୍ତରେ
ତେଣୁ ମୁଁ ଢାଳଇ ଲୁହ ନିତରେ ।

# ସ୍ମୃତି

ନୀଳ ଆକାଶର ଶଶୀ
ଆସି ମୋ ସମୀପେ ହସି
ଯନ୍ତ୍ରଣା ସହ୍ବ ସହ୍ବି କରମେ
ଚିହ୍ନ ରଖିଗଲା ମୋ ମରମେ ।

ଲକ୍ଷେ ଯୋଜନ ଦୂରେ
ଭୁଲିଗଲା ସେତ ଖରେ ;
ତା'କୁ ମୁଁ ଖୋଜଇ କେତେ ଆକୁଳେ !
ବନ ବୁକେ କୋକ ଡାକେ ବିକଳେ !

ସଜ କୁସୁମର ଡାଲା-
ପୂଜାରେ ଲାଗିନ ମାଳା
ଗୁହ୍ନିଁ ଗୁହ୍ନିଁ ପୂଜାରଣୀ ମରିଚ ;
ମରୁ-ପଥେ ନିର୍ଝର ଥମିଛି ।

ଚଉଦିଗ ମାରିବିକା
ଉଠାଇ ନିଚୂଳିକା
ଦେଖିଲା ଯେ ଜୀବନର ନାଟିକା
ଆହା ମୋର ଗର୍ଭାଙ୍କ ଧାସ୍ତିକ ॥

ମୂର୍ଚ୍ଛାତ ଗଲା ହଜି-
ଶୁକ୍ତିକା ଖାଲି ଆଜି
ଶୁଷ୍କ ପୁଲକେ ଆହା ଲୋଟୁଛି;
ରୁଦ୍ର ସାଗର ମାଡ଼ି ଆସୁଛି ।

## ପରିତାପ

ଆଜ ଏ ନଶୀଥେ ମନ
ଆକୂଳେ କର ଆଚ୍ଛନ୍ନ
କୁଆଟଗ୍ର ପ୍ରାଚୀ ନଭେ ଉଦିଲା ;
କ୍ଷୀଣାଲୋକେ ପଥ ବଣି ଆସିଲା ।

ଶ୍ରାନ୍ତ ପଥରେ ପୁଣି
ପାନ୍ଥ ଚରଣ ଗଣି
କାନ୍ତାର ପଥ ଆଜ ଧରଛି ;
ଶିଶିର ବୁକେ ତା'ପାଦ ଥରଛି ।



## ଭୁଲଯାଅ !

ଜୀବନର କରୁଣ କାହାଣୀ
ଭୁଲଯାଅ ପ୍ରିୟ ;
ଶୁଣ ମୋର ବିନୀତ ମାଗୁଣି ।
ଏହି ଦେଖ -
ପ୍ରକୃତି ରାଣୀର
ଚଞ୍ଚଳ ବିଶାଳ ଉତ୍ସଙ୍ଗେ

ଭୁଲିଯାଅ !

ପ୍ରଭାତର ସଘନ ପାଟଳିମା ;
ନୀଳ ପ୍ରଶାନ୍ତ ଗଗନେ ସମୁଜ୍ଜ୍ୱଳ ସ୍ୱଚ୍ଛତା ;
ଶୈଳ-ସାନୁ ନିତମ୍ବ ଚୁମ୍ବିତ
ନିର୍ଝରଣୀ-ବେଣୀ ;
ଆଜ
ଗଭୀର ସ୍ୱଚ୍ଛନୀର ନଦୀ ତଟ ଦେଶ ;
ଦୁର୍ବାଦଳ ମର୍କତ ଆସ୍ତୃତ
ଧରଣୀର ବିସ୍ତୃତ ଗରଭେ,
ବନ୍ଧୁର ସରଣୀ ମେଲିଚି ଆମର ମିଳନେ ପସ୍ୱ
ସତ୍ୟ ଶିବ ସୁନ୍ଦରର ଅପୂର୍ବ ପସରା
ସ୍ନିଗ୍ଧ ବସୁନ୍ଧରା ।
ଆସ ସଖା, ଆସ ଯିବା କରେ କର ଛନ୍ଦି
ପ୍ରେମ ବୀଥି ଅଭ୍ୟନ୍ତରେ ।
ଏଇ ଶୁଣ -
ଅନନ୍ତ ଦୂରେ
କୋକିଳ ଚଳଇ ମାତି ପଞ୍ଚମ କୂଜନେ
ଢାଳି ସୁଧା ପ୍ରାଣେ ପ୍ରାଣେ ବିଜନ ବିପିନେ ;
ଦ୍ରାକ୍ଷା-କୁଞ୍ଜ ଦୋଳି-
ତଳେଁ ଝୁଲି ଝୁଲି
ଯାପିବା ଜୀବନ, ଯୌବନ ।

ଭୁଲିଯାଅ ବାସ୍ତବର ବୁକଫଟା ବାଧା ;
ଭୁଲିଯାଅ ତୁମ ଆଦ୍ୟ ଜୀବନର ସାଧ ।
ଆସ ,
ଫେରିଆସ ,
ଡାକେ ତମ ଦ୍ୱିତୀୟା ;
ଫେରିଆସ ଡାକ ଥରେ ତାକୁ 'ଆଗୋ ମୋର ପ୍ରିୟା' ।
ବଞ୍ଚିଅଛି ବର୍ଷ ମାସ-ଅସୀମ କାମନା-
ତୁମ ପାଇଁ ମୁକୁଳା ତା'ର ହୃଦୟ-ମନ୍ଦିର ;
ଶୂନ୍ୟ ସିଂହାସନ
କର ରୂପାୟନ
ହେ ଦେବତା !
ଦେଖ, ପ୍ରଣୟ ସମ୍ଭାର ଝନା
ବ୍ୟର୍ଥ ତା ଜୀବନ ସିନା !
ମେଣ୍ଟାଇବ ନାହିଁ ତା' ପିପାସା ?
ବଞ୍ଚନାର ଝପୁଲ ତାଡନେ
ସବୁଜିବ ଅବସର ?
ଏତେ ନିରାଶା !
ଆସ ସଖା, ଆସ ମୋର ଆଶାସ୍ମୀ ଉରସେ ;
ଆସ ସଖା, ଘେନ ମୋର ବସନ୍ତ ସରସେ ;
ଏଇ ଦେଖ ପ୍ରିୟତମ -

ମସୃଣ ସୈକତେ ଜ୍ୟୋତ୍ସ୍ନା କରେ ବିଚରଣ ।
ପ୍ରେମର ସାଗରେ ପ୍ରେମ ତରଣୀ ଭସାଇ
ପ୍ରେମର ଅଯୂନେ ଯିବା ସ୍ୱର୍ଗ ପଥ ବାନ୍ଧି ।
ଚନ୍ଦ୍ରାଲୋକେ
ରଜତ କିରଣ ସ୍ନାତ
ମଳୟ ସମୀରଣ
ଅଳକ-ଗଣ୍ଡ-ଫଳକେ ଦେବ ସେ ଚୁମ୍ବନ ,
ନବ ଶିହରଣ ।
ତେବେ
ଭୁଲିଯିବ ଆପେ ଆପେ
ଜୀବନର ଅଜ୍ଞାତ ଅଶ୍ରୁଳାନୁଭୂତି ।
ହେବ ପରସ୍ପର ଜୀବନ ମିଳନ ,
ବାହୁ ଆଲିଙ୍ଗନ-
ଯେସ୍ନେ ବିଦ୍ୟୁଲ୍ଲତା ଘନ-
ସେତ ମୋର ଅନ୍ତରର ନମ୍ର ନିବେଦନ ।



# ଭୁଲି କି ପାରିବ ?

ଜୀବନର କରୁଣ କାହାଣୀ
ଭୁଲିପାରେନାହିଁ ପ୍ରିୟେ ;
ସେତ ମୋର ଚିରକାଳ ଧନମଣି ।
ପ୍ରଥମାର ସେ ଯେ ଉଚ୍ଛ୍ୱଳିତ
ହୃଦୟୁ ପୂରିତ୍ -
ବକ୍ଷ ଚିରି ଦେଖ ମୋର,

## ଭୁଲି କି ପାରିବ ?

ଅଙ୍କିତ ପ୍ରଣୟ ତା'ର
ଲୋମେ ଲୋମେ ରକ୍ତେ ରକ୍ତେ ;
ଫୁଟି ପଡ଼େ ଯେଉଁ ପ୍ରସ୍ରବଣ ଧାର ।
ସେତ ମୋର ଯୌବନର କନକ ବଳୁତ ;
କେମନ୍ତେ
ତା'ର ସ୍ମୃତି- ସଙ୍ଗେ
ଦେବ ଏହି ହାତେ ପୂର୍ଣ୍ଣାହୂତି ?
ଭୁଲି ପାରେ କେବେ ସଖି ପ୍ରଥମାର ପ୍ରୀତି ?
ଏହି ହାତ ଧନ୍ୟ ହେଲା
ଯା'ର ସୀମନ୍ତେ କୁଙ୍କୁମ ଗାର ଟାଣି ,
ଏହି ହାତ ସିକ୍ତ ହେଲା
ଯା'ର ହୃଦେ ମଙ୍ଗଳର ପ୍ରଣୟ ସୂତ୍ର ବୁଣି ,
ଏହି ଅଙ୍ଗେ
ଉପାସନ ଯା'ର ଅଛି ଅନୁଭବ-
କେମନ୍ତ ତା'କୁ ଭୁଲିବ ?
ସ୍ମୃତି-କୁଣ୍ଡେ ଦେବ ଢାଳି ମୋର ଏ ଜୀବନ ।
ପ୍ରାଣେ ଯା'ର ଅନ୍ଧାରର ଘନ ଆସ୍ତରଣ ,
ଅଙ୍ଗେ ଯା'ର ବେଦନାର କଣ୍ଟକ ତାଡ଼ନ-
ଶେଷ ଅଭିଳାଷ ତା'ର ଆତ୍ମ ନିରସନ ।
ପକ୍ଷହୀଣା ପକ୍ଷୀ ସମ ଆକୁଳେ ଏକାକୀ

## ସ୍ମୃତି

ଦେହର ଶୋଣିତେ ଆଙ୍କେ
ମୃତ୍ୟୁର ଛାୟାମୟୀ ମୂର୍ତ୍ତି ;
ଅଜାଣତେ ତୂଳୀରୁ ପଡ଼ଇ ଝରି
ରକ୍ତ ବିନ୍ଦୁ
ନିର୍ଝରିଣୀ ବକ୍ଷେ ;
ଗୁଲଇ ସେ ଗାଇ ମୋର ଗୁରୁ ବ୍ୟଥା ଗୀତି
ବିଶ୍ୱ ମୁଖେ ମୁଖେ ।
ପ୍ରକୃତିର ଏ ଯେ ଶାଶ୍ୱତ ବିଷମ ସମ୍ଭାର-
ସହକାର ବୁକେ ମାଧବୀର ,
କୁସୁମ କପୋଳେ ମଧୁପର ,
ସବୁ ମାୟା ସବୁ ହୃଦର-
ମରଣ ଅନିବାର ।
ଶରହତ ମୃଗ ସମ ପାଏ ନିର୍ଯାତନା
ଅନ୍ତିମ ବିଦାୟ ସ୍ମର
ଧରଣୀର ବକ୍ଷେ ପିଟେ
ଅବୟବ ମୋର ;
ହୃତ୍‌ପିଣ୍ଡ ଫାଟେ ,
କଲିଜା ଛିନ୍ନ ରକ୍ତ ଛୁଟେ ,
ମୃତ ଦେହ ଜଳଯାଏ ବେଦନା ଇନ୍ଧନେ !



# ଶେଷ ଅଭିଳାଷ

ଜୀବନ-ଜଳଧି-ସନ୍ଧ୍ୟା-ପୁଳିନେ
ନଇଁ ଆସେ ଇନ୍ଦୁ ,
ବୁକୁ ଚନ୍ଦ୍ର ନାହିଁ ଝରେ ଯୌବନର
ସ୍ନିଗ୍ଧ ଜ୍ୟୋତ୍ସ୍ନାବିନ୍ଦୁ ।
ଅନ୍ଧକାର ଟାଣି ଆଣେ ଜୀବନର
ଶେଷ ଯବନିକା ,
ଜଳିଯାଏ ଆପେ ଆପେ ଯେତେସବୁ
ପ୍ରୀତି ଅଦ୍ଵମିକା ।

## ସ୍ମୃତି

ନିର୍ମମ ସଂସାର ନିଷ୍କରୁଣ ଘାତ
କଣ୍ଟା ଫୁଟେ ପାଦେ ,
ତରଙ୍ଗ-ଲହରୀ ମାଳା ପିଟେ ଶିରେ
ମସ୍ତକ ଫଟାଦେ ।
ଛନ୍ଦହୀନ ଗୀତେ ମହୋଦଧି କରେ
ବିକଳ କ୍ରନ୍ଦନ ,
ମୃତ୍ୟୁ ଦେବତାର ଆବାହନ ପାଇଁ
କିବା ସେ ବନ୍ଦନ ।
ବକ୍ଷ ତଳ ଫୁଟିଉଠେ ପ୍ରଧୂମିତ
ବଡ଼ବାଗ୍ନି ଶିଖା ,
ତେଜିଛି ମମତା ସମ୍ବନ୍ଧର ସେତ
ତା'ର ବିଧି-ଲେଖା ।
ଝଡ଼, ଝଞ୍ଜା, ବାତ୍ୟା, ପ୍ରଚଣ୍ଡ ପ୍ରଳୟ
ଲହରୀର ଲମ୍ଫେ ,
କଲିଜା ତଳୁ ନିଗାଡେ ରକ୍ତଧାର ,
ଜୀର୍ଣ୍ଣ ତନୁ କମ୍ପେ ।
ଜଳିଯାଏ ଓଠ ତଳୁ ଯେତେସବୁ
କଳ୍ପନା-କଲ୍ଲୋଳ ,
ଫୁଟିଯାଏ ନେତ୍ର ବେନି ଝର ଝର
ଗରଳ - ହିଲ୍ଲୋଳ ।

ଜଗ ଆସେ , ଶ୍ରେୟ ଆଜି ସେତିକ ହିଁ
ସୁଖର ବିଳାସ ,
ନିଃସ୍ୱ ଏ ଜୀବନେ ତା'ର ମରଣହିଁ
ଶେଷ ଅଭିଳାଷ !



## ପଶ୍ଚିମ ପଥେ

ଶୈଳ ମାଳ ନଭସେ ,
ରକ୍ତ ରଶ୍ମି ରଭସେ ,
    ନଇଁ ଆସେ ଶୋଭା ଶିରୀ ତରୁଣୀ ,
ଶ୍ରାନ୍ତ ବନ ଗହ୍ୱଳ,
କ୍ଳାନ୍ତ-କଣ୍ଠ-କୋକିଳ
    ଆଳାପିଲା ଥରେ ଶେଷ ରାଗିଣୀ ।

ଅଳି କୁଳ ଗୁଞ୍ଜନ ;
ଶିଞ୍ଜିମାର ଶିଞ୍ଜନ
ଭଜିଲା ଶିଥିଳ ଶୃଙ୍ଖୁ ଚରଣେ ,
ଇନ୍ଦୀବର ନୟନ
ଲଭି ଶେଷ ସ୍ପନ୍ଦନ
ନମୀଳିତ ହେଲା ତାମସ ଗୁଣେ ।
ଭାଲ ପଟ ମିହିର ,
ଜପ୍ନୂ ବନ୍ଧୁ ସିନ୍ଦୂର
ପଶ୍ଚିମ ଆକାଶେ ହେଲା ବିଲୀନ,
ବଧୂରତ ରଥାଙ୍ଗ
ତେଜି ପ୍ରେୟସୀ ସଙ୍ଗ
ଆର୍ତ୍ତକଣ୍ଠେ କମ୍ପାଇଲା ପୂଳିନ ।
ପ୍ରେମାରୁଣ - ପ୍ରଦୀପ
ହେଲା ଧୀରେ ନିର୍ବାପ
ଅନ୍ଧକାର ପଣତର ଆଘାତେ ,
ଅନ୍ଧକାର ଅୟନେ
ଶୁଷ୍କ ମ୍ଳାନ ବଦନେ
ଅସ୍ତାଚଳ ଲୁକ୍କାୟିତ ଦିଗନ୍ତେ ।



# ପଥ ଆଉ ରୋଧନା

ଆଖି ଛଳେ ଛଳେ ଆଜ
ଅଶ୍ରୁର ଚପ୍ନ ;
ବନ୍ଧୁହେ ରୋଧ କର୍ଣ୍ଣା
ଝରଦ୍ଧୀର ଅପ୍ନ ?
ଗୋଧୂଳୀ ଜୀବନେ ତାର
ନାହିଁ ମଧୁ ଅଭିସାର ,
ଲୋଡେ ନାହିଁ ତୁମର ଏ ବନ୍ଧନ ,
ବନ୍ଧୁହେ ରୋଧ କର୍ଣ୍ଣା
ଝରଦ୍ଧୀର ଅପ୍ନ ?

# ପଥ ଆଉ ରୋଧନା

ଅଚ୍ଛ ପଦ୍ମ ଚରଣର
କଣ୍ଟଲସ୍ଥ ନଲ୍ମ
ହାତ ମାର ଦେଖ ସଖି
ଏଯେ ତା'ର ମରମ;
ଅଚ୍ଛ ପଦ୍ମ ପରିମଳ ,
ଭୃଙ୍ଗର ମଧୁ କଳ ,
ପୀରତର ସମ୍ଭାର ମରମ ,
ହାତ ମାର ଦେଖ ସଖି
ଏ ଯେ ତା'ର ମରମ ।

କପୋତର ବୁକୁ ତଳେ
ଛୁଆଟିଏ ଅରପି
କପୋତି ଯେ ଗଲା ଉଡି
ଅସୀମରେ ଜଳପି ;
ନବଜ ନୟଣା ଭରି
ମାଜ ତା'ଉଠଇ ଥରି
ଶିଶୁ ଡାକେ ମାତୃକୁ ବଳପି ,
ବନ୍ଧୁ ହେ ଦେଖ ଆଜି
ଦୁର୍ଦ୍ଦଶା ଭୋଗେକ ।

## ସ୍ମୃତି

ଙ୍କପୋଷ୍ଟି ଯେ ଗଲା ଉଡ଼ି
ଅସୀମର ଅପ୍ନେ ,
ଫଉଦ୍ଦର ହାହାକାର
ଗିରୀଷମ ଜୀବନେ ;
ଶୂନ୍ୟ ଏ ଯଉବନ
ଶୂନ୍ୟ ଏ ତନୁ ମନ
ଶୂନ୍ୟ ଲାଗଇ ଏଇ ଭୁବନେ ,
ଚଉଦ୍ଦର ହାହାକାର
ଗିରୀଷମ ଜୀବନେ ।

ବହଗ ଆକୁଳ ରବେ
ବ୍ୟଥିତ ଏ ସରଣୀ ,
ତୃଷତା ଲଭିଚ କା'
ନିଶ୍ୱାସେ ଧରଣୀ ?
ମୂର୍ଚ୍ଛିତ ପ୍ରକୃତି ,
ଶୁଷ୍କ କଠୋର ସ୍ମୃତି
ଗାଏ ବିଦାୟର ଶେଷ ରାଗିଣୀ ,
ତୃଷତା ଲଭିଚ କା'
ନିଶ୍ୱାସେ ଧରଣୀ ?

ଖୋଲ ଖୋଲ ଖୋଲ ସଖି ,

ପଥ ଆଜ ରୋଧନା,'

ତୁମ ହୃଦେ ଏ କାହାଣୀ

ଦେଇଚ ଗୋ ଯାଚନା;

ବୟସ ଅତି କୋମଳ -

ଶୋକ ଶୁଣିବାର କାଳ

ଆସିନାହିଁ ତୁମ ପ୍ରାଣେ ନବୀନା ,

ଖୋଲ ଖୋଲ ଖୋଲ ସଖି ,

ପଥ ଆଜ ରୋଧନା ।'

ପଥେ 'ପଥେ ଆଜ ଯେତେ

ଲୋତକର ତାଡନା-

ସ୍ନେହ ପାଇଁ ଏଇ ତା'ର

ସୁଦୃଢ଼ ସାଧନା ;

କଣ୍ଟକ ପଦେ ପଦେ

ଫୁଟି ଉଠୁ ପରମାଦେ

ବୁକୁ ଝରୁ କାରୁଣ୍ୟ ଝରଣା ,

ପ୍ରୀତି ଅନୁରାଗୀର ଏ

ସୁଦୃଢ଼ ସାଧନା ।

## ସୂକ୍ତି

ଯାଅ ସଖି ଦୋହଲାଇଁ
ଯଉବନ-କେତନ ,
ଅପର ଦୁଆରେ ମାଗ
ମଳୟର ପବନ ;
ଫୁଟିବ କୁସୁମ-କଳ ,
ବାସ ଉଠିବ ଉଚ୍ଛୁଳ ,
ଅନ୍ୟ କୁଟୀର ଗାଉ ତୁମ ଶୁଭାଗମନ ,
ଦୁର୍ଭାଗ ପଥିକର
କଲ୍ୟାଣ ଏ ଯେନ ।



## ସୃଜନ ରହସ୍ୟ

ଯେଦିନୁ ତୁମ ସଙ୍ଗ ଘଟିଲା ବିଚ୍ଛେଦ,
ସେଦିନୁ ପାପ-ବହ୍ନି ଗ୍ରାସିଛି ଅପଘନ ;
ଯେତେ ଯେ ଅପରାଧ କରଇ ନିତି ନିତି
କ୍ଷମିବ କିଏ ଆଜ ଜୀବନ ହେ ଜୀବନ ?
ସୁଦୂର ମରୁପଥେ ଛାଡ଼ି ଯେ ଗଲ ମୋତେ,
ଗୋଧୂଳି ଘାଟେ ଲେଖି ଜୀବନ ପ୍ରତିଲିପି;
ସେ ନୁହେଁ ଉଦଯାପନ, ଅସ୍ତ ସିନା ମୋର-
ଆଜ ମୁଁ ମୁଦ୍ରଣ କରୁଛି ଟିପି ଟିପି ।

## ସ୍ମୃତି

ବିଦାୟ ବେଳେ ଥରେ ଚୁମ୍ବି ମୋ ନତ ମୁଖ,
ଅଶ୍ରୁ ପୋଛୁ ଧୀରେ ଦେଲ ମେ ଅଞ୍ଚଳ;
ବିଯୋଗେ ସେ ମିଳନ, ମିଳନେ ସେ ବିୟୋଗ,
ସ୍ୱର୍ଗ ପଥେ ମଧୁ-ସୂତ୍ର, ସମ୍ବଳ ।
ଯା' ଦେଲ ଓଠ ପୁଟେ, ଯତନେ ସାଇତିଛି,
ତେଣୁ ଏ ଧରା ହେଲା ଜୀବନ ଅଭିସାର
ଯାହାକୁ ଦେଖେ ନିତି, ତା' ବୁକେ ଢାଳେ ପ୍ରୀତି,
ସକଳ ମଧ୍ୟେ ଗୋ ମୁଁ ତୁମ କଳାକାର ।
ସୃଜନ ଅଜ୍ଞାତେ ବିଜନ କୋଣେ ବାଜେ
ତୁମର ଅମୃତ କନକ ବଲ୍ଲକୀ;
ଏତେ ଯେ ପରିଚିତ ମଧୁର ସଙ୍ଗୀତ-
କା' ପାଇଁ ଆହ୍ୱାନ ବୁଝି ମୁଁ ନପାରେକି ?
ଏ ମୋର ଆତ୍ମା ଯେ ଲାଗିଛି ତୁମ ସ୍ନେହେ
ସାଗର ବିସ୍ତୃତ ଲହରୀ ଲୀଳା ସମ;
ଲହରୀ ଚୂଳେ ଝରେ ଯେବଣ ଚନ୍ଦ୍ରିକା-
ସେ ତୁମ କରଳାପି ସ୍ପର୍ଶ ଅନୁପମ ।
ପବନେ ଯେତେ ହଜେ କ୍ଷୀଣ ଆଲୋକ ରେଖା-
ପବନ ଗାଏ ତାର ସ୍ମରଣ ସଙ୍ଗୀତ;
ନିରାଶା ପଥେ ଫୁଟି ଆଶାର ପୂତ କଳି-
ସେ ସିନା ସୃଷ୍ଟିର ଗୋପନ ଇଙ୍ଗିତ ।



## ବସନ୍ତ - ବିରହୀ

ସାରା ଧରା ବକ୍ଷେ ବହୁଛି ଗୋ ଆଜି
ଉତ୍ତାଳ-ସୁବାସ-ମଳୟ-ପବନ ;
ଚିତ୍ତ ତଳେ ମୋର ଗୁମରେ ବେଦନା-
କୋହ କନ୍ଦୁ ଉଠୁଛି ଗୋ ଘନଘନ ।

# ସ୍ମୃତି

ନବ ସହକାର ସ୍ନିଗ୍ଧ କିଶଳୟୁ
ବଢାଇ ବଉଳ ମାରୁଛି ଗୋ ଉଙ୍କି ;
ପାଷାଣେ ପାଷାଣେ ମର୍ମରୁଛି ସୁଧା
ପଲ୍ଲବେ ପଲ୍ଲବେ ମଧୁ ଦେଇ ଆଙ୍କି ।

ଅନଳ-କମ୍ପିତ- ଗୁଚ୍ଛ-କିଶଳୟ-
ମଧୁ-ଭରା-ବୃନ୍ତ-ଲୋହିତ-ଗୋଲାପ
ଖୋଜିଲ କା'ର ଗଣ୍ଡ ସଜାଡ଼ି ଦେବଗୋ ?
ଜାଳୁଛ ତ ମୋର ବୁକେ ଶେଷ ଦୀପ ।

ମଲ୍ଲୀ-ବଲ୍ଲୀ କୋଳେ ସୁବାସ କୁସୁମ
ଛୁଟି ଯାଏ ପୁଣି ବ୍ୟର୍ଥତାରେ ଫୁଟି,
କେଉଁ ଓଶ୍ରୟେ ଗୁନ୍ଥି କାହାର ଗଳାରେ
ଗଳାଇବ ପ୍ରିୟେ ? ଗ୍ଳାନି ଯାଏ ଫାଟି ।

ନବ ପଲ୍ଲବିତ ଚୂତ ଡାଳେ ବସି
କୁହୁ କୁହୁ ତାନେ ଆଳାପେ କୋକିଳ
କେ ଆଜ ଗାଇବ ପିକ-ତାନ ଧରି
ମୋର ବୀଣା ତନ୍ତ୍ରେ ଫୁଟାଇ ମଞ୍ଜୁଳ ?

ଫୁଟିଲା ମନ୍ଦାର ମଧୁପ ଗୁଞ୍ଜନେ ,
ନାହିଁ ଯେ ଭ୍ରମର ପ୍ରବାଳ ଅଧର;
କା'ର ଓଷ୍ଠ ତଳେ ଆଙ୍କିବ ଚୁମ୍ବନ
ପିଇ ଉତ୍ତରଳ-ଉତ୍ତାଳ-ମଦିର ?

କାହାର ତନୁରେ ଲମ୍ବାଇ ଦେବଗୋ
କସ୍ତୁରୀ କେତକୀ ପତ୍ରବଲ୍ଲୀ ଆଜ ?
ପଲ୍ଲବେ ପଲ୍ଲବେ ସୁଗନ୍ଧ କୁଙ୍କୁମ
ଝରିପଡେ ଏଯେ ପାରନ୍ତକ ତେଜ ?

ମରୁବୁକେ ଆଜ ବାହିଲା ଧରଣୀ
ଶ୍ୟାମଳତା-ଭେଲା ସ୍ନିଗ୍ଧ ଜ୍ୟୋତ୍ସ୍ନା ମଖା ;
ମୋର ହୃଦେ କିନ୍ତୁ ଜଳି ଉଠୁଛି ଗୋ
ସ୍ମୃତି-ଦାବାନଳ ଲେଲହାନ ଶିଖା ।

ନକେତେ ଯେ ମୋହର କଳ୍ପନା ଜଳ୍ପନା,
ବହ୍ନିମଲ୍ଲୀ ସମ ହେଲା ପରିଣାମ ;
ବନ-ବହ୍ନି ବିନା ଜଗତ ଜାଣଇ,
କେ କରେ ମାନସ ବ୍ୟଥା ଉପଶମ ?

## ସ୍ମୃତି

ସ୍ମୃତିଶୀଳ ମଧୁ-          କାଳ ରଖାଇଲେ
ନିଖିଳ ବିଶ୍ୱର ଅମୀର ଫକୀର ;
ଆଜ ପ୍ରିୟେ ତୁମ     ବିହୁନେ ଶୂନ୍ୟ ମୋ
ବ୍ୟଥା-କବଳିତ-ବିଧୁର-କୁଟୀର ।

ଶାନ୍ତ ବୁକୁ ତଳ          ବୁଣି ଦେଲା ଆଜ
ଖେଦ-ବୀଜ ହୃଦେ ଯୌବନ-ବେଦନା;
ରହିଗଲା କେତେ          ପୀରତି-ଖେଳନା,
ହାୟରେ ବିଧାତା ଏକ ବିଡମ୍ବନା !



## କମ୍ପନ

ଅସହାୟ ଶିଶୁ ମୁଖେ ନଫୁଟଇ ଭାଷା ,
ମର୍ମେ ତାର ମର୍ମରଇ କବା ସୁଖ ଆଶା ?
ସରଳ ବୃହାଣୀ ତଳେ ତରଳଇ ଝର ,
କେଉଁ ସ୍ନେହ ଅନ୍ୱେଷଣେ ନରତ କାତର ?
କଣ୍ଠ ତଟେ ସ୍ଫୁର ଆସେ କବାସେ କାହାଣୀ ?
ଆଶାୟୀ ହୃଦୟ ଲୋଡ଼େ କେଉଁ ସ୍ନେହବାଣୀ ?

# ସ୍ମୃତି

ଗ୍ରୀଷ୍ମ ଝଞ୍ଜା ବହିଯାଏ ମରୁଇ ମରମ ,
ମରୁ ବୁକେ କ୍ଷୀଣ ଝର ମରଇ ଯେସନ ।
ସବୁ ଢଟଶ ହାହାକାର କ୍ଷଣିକ କଂପନେ
ଚପଳା ଚମକ ପ୍ରାପ୍ତ ସୃଷ୍ଟିର ସପନେ ।
ଅଧରେ ଫୁଟଇ ଦରଫୁଟ ମିଷ୍ଟ କଥା ,
ହସାଇଚ ସ୍ୱଜନର ଆଦର ମମତା ।
ସୃଷ୍ଟିର ଝଟତ୍ର ଟଣେ ହଜାଇଣ ଧତ୍ରା
ମୁଗ୍ଧ ଶିଶୁ ରହେ ଖୁଜିଁ ନଚକାଇ ଚତା ।
ସକଳେ ଏ ଚଟିବାରେ ପ୍ରୀତି-ବାରି ଢ଼ାଳି
ସୋହାଗେ ତାକୁ କୋଳକୁ ନଅନ୍ତି ଫୋଠାଳି ।
ତଥାପି ଉଠଇ ଥରେ ଦଦରୁ ଏ ନାଆ
ଶିଶୁ ମୋର ଡାକେ ଯେବେ ସ୍ନେହକଣ୍ଠେ 'ମାଆଁ' ।



## ବିଦାୟ ବିଳାପ

'ସୁଦୂରେ ଯାଉଛ ପ୍ରିୟ ;
ସମୟ ତ ଆସି ହେଲାଣି ଅଷାଢ ;
ଶେଷ ହେଲା ପରିଚୟ —
ଅନ୍ତ୍ୟ ବିଦାୟ ଦିଅ ।

# ସ୍ମୃତି

ତପନ ଯେବେ ଗୋ ବୁଡିବ ସଧୀରେ
ପଶ୍ଚିମ - ପଥ ଛୁଇଁ ;
ମନ୍ଦ ମଳୟ କୁସୁମ ଗନ୍ଧେ
ଷୁଧାରେ ପଡିବ ନଇଁ ;

କାନ୍ତ କରଣେ ଅବମା ହସିବ
କୁଙ୍କୁମାଧର ମାଜ ;
ବିଶ୍ୱ-ବୀଣାର ତନ୍ତ୍ରୀ ଗାଇବ
ବନ୍ଦଗର ହାତ ବାଜ;-
ନଥିବତ ସନ୍ନିଧେ —
କପରିଗୋ ପ୍ରିୟ ଏ ଗୁରୁ ବିରହ
ସହିବ ତରୁଣ ହୃଦେ ?

ଅଶ୍ରୁ ସିକତ ଗଣ୍ଡରେ କର-
ଭର୍‌ଦେଇ ପ୍ରିୟତମ—
ରହିଁ ରହିବଗୋ ଅସୀମ ଅୟୁନେ
ଅଭାଗା ଚକ୍ର ସମ ।

# ବିଦାୟ ବିଳାପ

କ୍ଲାନ୍ତ କୋକିଳ ଫେରିବ ମଳୟେ
ଶେଷ ଗଲେ ଗୀତ ଗାଇ ;
ଭ୍ରମର ବେଦନା ବଢ଼ିଯିବ ସିନା—
ଅବସାନ ହେବ ନାହିଁ ।
ଭୃଙ୍ଗ ତ ଦେବ ଡକା—
ଶୁଭ୍ର ନଳିନ ବଦନେ ଟାଣିବ
ନିଶୀଥିନୀ ନିଚୂଳିକା ।

ସନ୍ଧ୍ୟା ଯେବେ ଗୋ କବରୀରେ ଫୁଲ
ଖୋସିବ ଗୋଟିକ ଗୋଟି
ଓଢ଼ଣାର ତଳୁ ଚନ୍ଦ୍ରିକା ହସ
ଆସିବ ସଧୀରେ ଫୁଟି ।

ତା'ରେ ଗୃହିଁ ଗୃହିଁ ଗଣ୍ଡେ ଲୋତକ
ରହିବ ଶୁଷ୍କ ଧାର ;
ସ୍ନିଗ୍ଧ ସମୀରେ ଭ୍ରମର କୋମଳ—
ଗୁଚ୍ଛ ହେବ ଥର ଥର ;
ଗୁରୁ କ୍ରୋଧ ଆଘାତରେ
ବେପଥୁ ଶରୀର ଢ଼ାଳି ହୋଇଯିବ
ଶୂନ୍ୟ ତଳପ ପରେ ।

## ସ୍ମୃତି

ଧରଣୀ ଖୋଜିବ ପ୍ରିୟକୁ ତାହାର
ରଚିବାକୁ ପ୍ରେମ ଲୀଳା
ଧୀରେ ଧୀରେ ଆସି 'ଶାନ୍ତ' ହସିବ
ଉରସେ ମଧୁର ଖେଳା ।

ଝରିବ ଅଧରୁ ଜ୍ୟୋଛ୍ନା ମଦିରା,
'ଶାନ୍ତ' ଡାକିବ 'ପ୍ରିୟା';
ଧରଣୀ କହିବ 'ଆସିଲ ଗୋ ପ୍ରିୟ,
ଏଇ ଯେନ ତୁମ ହିୟା;'
ଡ଼ଲାଇ କର ଅବଶେ -
ହାତ ମାରି ଯେବେ ଖୋଜିବ ଗୋ ମତେ
କହିବ 'ମୁଁ ନାହିଁ ପାଶେ '।

ସନ୍ଧ୍ୟାର ନୀଳ ଅମ୍ବର ତଳେ
ଥିବ ଅଜାଣତେ ଲୁଚି,
ସେଠିଁ ସେ ଢ଼ାଳିବ ଲୋତକ ବିଧୁର
ବକ୍ଷରେ ନେବ ପୋଛି ।

## ବଦାୟ ବଳାପ

କ୍ଷିପ୍ତ ମାନସେ ବସିଲେ ତଳପେ
ଗଣ୍ଡେ ପଡ଼ିବ ଝରି--
ଚୁମ୍ବନ ଦେବ ଅଶ୍ରୁ ଉପରେ
ଗାଢ଼ ଆଶ୍ଳେଷ କରି ;
କାହାର ଏ ଅଭିଶାପ ?
ପୀରତି ଅରପି ବିଚ୍ଛେଦ ଭୋଗ-
ଏଥୁ ବଳି କାହିଁ ପାପ ?

ଭବ ଭବ ଯେବେ ଚିତ୍ତ ଯିବ ଥକି
ରୁଦ୍ଧ ବେଦନା ଭାରେ ;
ହୃଦୟ ପିଣ୍ଡେ ତପ୍ତ ଶୋଣିତ
ନବନ୍ଧବ ଖଧୃତରେ ;

ନ ଫୁଟିବ ଭାଷା କଣ୍ଠରେ ଆଉ,
ତନୁରେ ପୂରିବ ଝାଳ ;
ଭବବ ପ୍ରିୟର ଆସିଛି ଯେ ଏବେ
ଜୀବନ ମରଣ କାଳ ।
ସମୀରେ ଆସିବ ଧାଇଁ-
ଭାଗ୍ୟ ତୁମର ପୋଛି ଦେବ ପ୍ରିୟ
ସିକ୍ତ କପୋଳ ଛୁଇଁ ।

# ସ୍ମୃତି

ନୟନ ମେଲାଇ    ଖୁଣ୍ଢିଁବ ଯେବେ ଗୋ
ସୁପ୍ତ ତାରକା ପଥେ ,
ଗୀତ ଗାଇ ଗାଇ    ଥାପି ଦେବ ଧୀରେ
ମନ୍ଦ-ମଳୟ-ହାତେ ,

ଚନ୍ଦ୍ରିକା ବେଶେ    ଆସିବ ଗୋ ପାଶେ
ବୁଜା ବାତାୟନ ଧାରେ ;
ଭୁଜେ ମଥା ଦେଇ    ପରଶି ବଦନ
କହିବ ମଞ୍ଜୁଳ ଗିରେ —
'ନିଶି ହେଲା ନିରନ୍ତର —
ଆସ ଆସ ପ୍ରିୟ    ପ୍ରେୟସୀକୁ ଧର
ମଧୁର ନିଦ୍ରା କର ।'

ଆଖି ବୁଜି ଯେବେ    ଶୋଇବ ସ୍ୱବଶେ
ପ୍ରିୟା ଆଶ୍ଳେଷ ଲଭି ,
ଦୂରେ ଝୁଲିଯିବ    ସ୍ୱପନ ରାଇଜେ
ତୁମରେ ମୁଁ ଭାବ ଭାବ ।

## ବିଦାୟ ବିଳାପ

ସେଇ ଭୁବନରେ ଭ୍ରମିବା ବେଳଏଁ
ହୃଦୟ ହୃଦୟେ ରଖି ;
ବନମଧ୍ୟେ ଚୁମ୍ବି ଚୁମ୍ବି ଭଲ ପାଇ
ଅଧର—ପୀୟୂଷ ଚାଖି ।
ନିଶୀଥିନୀ ଯିବ ପାହି ,
କଂପିତ ହୃଦେ ଡାକ ଉଠିବଗୋ
'ପ୍ରିୟା କାହିଁ, ପ୍ରିୟା କାହିଁ !'

ନିରବଧି ଏଥେ ପାଏ ପ୍ରିୟା ନିଜେ
ପ୍ରଣୟ ଅଶ୍ରୁ ଦାନ ;
ନିତ ନିଶା-ଶେଷେ ଦେବେ ଉପହାର—
ସପନର ଚୁମ୍ବନ ।

ଯାହାର ବିଯୋଗ ଜୀର୍ଣ୍ଣ କରୁଛି
ପ୍ରିୟର ତରୁଣ ତନୁ -
ପ୍ରେୟସୀ ତାହାର ଭୁଲିବ କେସନ ?
ପୋଛି ଦେବ ତା'ରେ ମନୁ ?
ହାୟରେ ମିଳନ କାହିଁ ?
ପ୍ରିୟ ଯିବା ତାର ପ୍ରେମ ବିଳାପକୁ
କପାଳରେ ହାତଦେଇ ।

## ସ୍ମୃତି

ଏ ଭଲ ସେନେହ,   ଏ ଗୁରୁ ବିରହ
ଚିତ୍ତରେ ଲୁଚି ଧର—
ଦୁର୍ବିସହ   ଏ   ଜୀବନ  ନୁହେଁକି
ଦଗ୍ଧ ବୃକ୍ଷ ପରି ?

ପ୍ରଣୟରୁ ବଳି   ନାହିଁ ତ ସାଧନା,
ବିଯୋଗରୁ ନାହିଁ ପାପ ;
ପାପ-ଘଟ ପରେ   ରଚନ୍ତେ ବିଧାତା
ମୃଣ୍ମୟ ଏକ ସ୍ତୂପ ;
ମିଳନ ଆସିବ ଫେରି—
ଶାନ୍ତ ପ୍ରଣୟ   ଗଢ଼େ ଆମରି
ଅନ୍ତର ପିବ ଭରି ।



## ଆହ୍ୱାନ

ଯଉବନେ ମୋର ନାହିଁ ଆଉ ପ୍ରେମ ଲାଳସା
ହଜିଗଲା ଯେବେ ଜୀବାକାଶ ଜ୍ୟୋତି ଭରସା ,
ପରାଣର ଯେତେ କଉତୁକ ଖେଳା ,
କାନ୍ତ କ୍ଷା ଉଠ- କନକଠ - ଭେଳା
ଜଳଧି- ଶିଖରେ ଗଲା ଯେବେ ଶ୍ରାନ୍ତ ସହସା ,
ଯଉବନେ ମୋର ନାହିଁ ନାହିଁ ପ୍ରେମ ଲାଳସା ।

# ସ୍ମୃତି

ଭବ ଭବ ଭବ ଭ୍ରମଇ ନପାଇ ଆଶ୍ରୟ ;
ବିରହ-ଦୁଆରୁ ଫେର ଆସେ ସବୁ ଯେନେହ
ଅଧା ଏ ଗୁନ୍ଥା କୁସୁମର ହାର
ଅଧା ଲେଖା ଗୀତ ପିଚ୍ଛିଳତର
ପୂର୍ଣ୍ଣ କେ କରେ ଦୁନିଆରେ କେହି ନାହିଁ ଯେ ?
ଭବ ଭବ ଭବ ଭ୍ରମଇ ଅଜଣା ରାଇଜେ ।

କେହିବା ଜାଣିବ ମରମର ଶତ ଯାତନା
ନାହିଁ ଯେବେ ପ୍ରିୟା ଦେବା ପାଇଁ ସମବେଦନା ?
କେ ଦେବରେ ପୋଛି ଅଶ୍ରୁ ଝରଣା ?
କେ ହେବରେ ମୋର ଦୁଃଖେ କରୁଣା ?
ଯେ ଥିଲା ସେ ଥିଲା କାହିଁ ଦୂରେ ଗଲା ଅଜଣା;
କେହିବା ଜାଣିବ ମରମର ଶତ ଯାତନା ।

ସଂସାରେ କେଗୋ ମୋର ଭଲ ଅଛ ଜାଣେନା ;
ପ୍ରଣୟ ଦେଇଯେ ବିରହିଙ୍କୁ କରେ ସାଧନା ;
ତୁମ ବିନା କେହି ମନକୁ ଉଜାଣି
କହାଁ ଶୁଣିବେ ଏ ଦଗ୍ଧ କାହାଣୀ ?
ଆସ ସଖା ଥରେ ବିରହୀ କରେ ହେ ଯାଚନା ;
ସଂସାରେ କେ ଗୋ ମୋର ଭଲ ଅଛ ଜାଣେନା ।

ଆମର ଭଙ୍ଗା ତରଣୀ କଣ୍ଟହେ ତୋଜନ
ଶୋକ ପାରାବାରେ ବାହ୍ନି ଯିବା ଶତ ଯୋଜନ ;
ପ୍ରିୟା ପ୍ରିୟା ବୋଲି ଦୁହେଁ ଦେବା ରଡ଼ି,
ଉତ୍ତର ଯଦି ନଆସେ ବାହୁଡ଼ି ,
ସେଇ ଅସୀମରେ ଝାସ ଦେବା ଦୁଇ ପରାଣ
ଆମର ଭଙ୍ଗା ତରଣୀ ଲଭିବ ମିଳନ ।



# ଅବିସ୍ମରଣୀୟ

ସକଳ ଜଞ୍ଜାଳ କର୍ମରତ ଭବେ—
ସକଳ ସୁଖ ଦୁଃଖ ନବୀନ ଅନୁଭବେ—
ସବୁଜ ଝାଉଁଳତ ଅକାଳ ମୁଖେ
ନବ ତମାଳ ସମ ଏ ମମ ବୁକେ;
କରୁଛତ ନାହିଁ ମନେ ସ୍ମରଣ;
ସଜାଇ ନିତି ନବ ଭୂଷଣ-
ଘୋଟିଏ ବୋଲି କଥା- ଗୋଟିଏ ବୋଲି ବ୍ୟଥା-
ଲାଗିଛି ହୃଦେ ଗାଢ଼ ପରଶେ—
ଦାରୁଣ ଘଟେବ ଯାହା ପାଞ୍ଚୁଥିଲ ସଖି
ଆପଣା କଲ୍ୟାଣ ସକାଶେ ।

ନତ ନଶୀଥ ଶେଯେ ମୁଦ ନୟନ ପତା—
କେଶ ତଇଲେ ମୋର ଉଜାଇ ବାହୁଲତା—-
ମଉନେ କେତେ କଥା ପାଞ୍ଚ ମନେ
ରହୁଁ ମୋ ଦଗେ ସଖି ବ୍ରୀଡତାନନେ;
ସକଳ ବନ୍ଧନ ଆବୋର
ଦନତ ଗଲା ଧୀରେ ପହିଁର;
ଘୁଟିକ ଘୁଡ ବାଜ—ପୀଯୂଷେ ଓଠ ମାଜ —
ନବଜ ହେଲା ଯେବେ ପୀରତ ,
ମୃଚ୍ଛୁଲ ' ପ୍ରିୟତମା ! କଣ୍ଡବ ନତ ନତ
ନଦ୍ରାକର ମତେ କହୁଛି '।
ଏଜନ ବଳାତ୍କାରେ ଶଙ୍କିତ ହୃଦୟେ
ଦର ମିକଡ ଗଟେ କହୁଲ ସଂଶୟେ—
'ତୁମର ଆଗେ ମୋର ଜୀବନ ଯାଉ,
ଘବେ ମୁଁ ନତ, କଣ୍ଟୁ ନୁହେ ତ ଆଉ';
ମନର କଳ୍ପନା କପାଳେ
ଫଳତ ଗଲା ସଖି ଅକାଳେ ;
ଏକ ତୋ ହେଲା ମାନ— ପ୍ରୀତିର ପ୍ରତଦାନ—
ସେ କଥା ଆଜ ବ୍ୟଥା ମଉନେ
ପଉଷ ତନ୍ତୁ ନୁଁ ଯେ ଶୁଖିଲା ଡାଳେ ବସି
ଚଉ—କୂରର ମୋ ବାହୁନେ ।

# ସ୍ମୃତି

ଶୁଭ୍ର ନୀଳ ଜଳ ପୁଷ୍କରଣୀ ବୁକେ
ଫୁଟି ଆସିବା ଶୁଭ୍ର କମଳକଳି ମୁଖେ-
ନୃତ୍ୟ ଖେଳ ରତ ତରୁଣ ଅଳି
ନାଚତ ଆସୁଥିଲା ଚୀରନ୍ତ କଳି;
ଗୁଞ୍ଜର ସ୍ପୃହା ସୁଧା ସଧରେ
ଅଜାଣତ ଥିଲା ଫୁଲ ଅଧରେ;
କାହିଁ ଅକାଳେ ଆସି ମୃତ୍ୟୁ-ଗଜ ନାଶି
ନଳିନ ନାଳ ଦେଲା ତୁଟାଇ;
କ୍ଷିପ୍ର ମଧୁକର ଉଡ଼ିଚ ଗଲା ଖଡରେ
ବ୍ୟସ୍ତ ରବେ ଧରା ଥରାଇ ।

ନୟନେ ପଡ଼େ ଆଜ ପ୍ରାଣ ଅଜଣା ସ୍ନେହ—
ହୃଦୟେ ଥାପି ମଥା ଅରପି ଦେବା ଦେହ—
ନୂପୁର ଝଙ୍କେରେ ଭୁଲିବା ଠାଣି,
ଗେଲାଇ କହିବାର ସୋହାଗ ବାଣୀ,
ଅଧରେ ହାଣି ଦର ସରମ—
ମରମେ ଢାଳିଦେବା ମରମ—
ସେ ସବୁ ଆଜ ସଖି କଳାଭ ମନେ ରଖି ?
ଗୋଟିଏ କଥା ସିନା ଅଭୁଲା —
ଏତେ ବଡ଼ୁଲ ଦାନ ଦେଇଚ ଯେବେ ପ୍ରିୟେ !
ସଞ୍ଚିତ ଗାଉ ମୋର ବେହୁଲା ।

## ଅବିସ୍ମରଣୀୟ

ସକଳ ଅବସର ବିଜନ ବେଳେ ବସି--
ସକଳ ପରିଜନ ବନ୍ଧୁ ମେଳେ ହସି—
ଏକଇ କଥା ସେ ଯେ ଅମିୟ ସ୍ରାବ
ଯୋଗାଏ ମନେ ଶତସହସ୍ର ଭାବ ;
ଭୁଲଇ ଅପତନ ପରତେ
ସୃଷ୍ଟି କି ପ୍ରଳୟ ଜଗତେ;
ନବୁଝେ ତନୁ ମନ— ଲାଗଇ ସମ୍ଭ୍ରମ—
ଝାପ୍‌ସା ଦିଶେ ସାରା ଧରଣୀ ,
ଧରି ମୁଁ ପାରେନାଗୋ କୂଆଁ ସେ ଆହ୍ଲାଦ
ବୁଡଲେ ବୁଡୁ ପଛେ ତରଣୀ ।

ଜଗତ କୋଳାହଳ ଯାର୍ଦ୍ଧ ବ୍ୟବଧାନେ
କରତ ବ୍ୟାକୁଳିତ ଥିଲଗୋ ଅବଧାନେ;
ହୃଦୟେ ହୃଦ ଦେଇ ମିଶିବା ଆଶେ
ଘନେ ବିଜୁଳି ଯଥା ଅମର ହସେ;
ପୂରନ୍ତୁ ଆଜ ତୁମ ବାସନା—
ଆସ ଗୋ ଆସ ଶଶୀବଦନା—
ଏ ମମ ଅନ୍ତରେ ଯେତେ ସେନେହ ଥରେ
ଭୋଗ ଗୋ ଭୋଗ ଅଭିମାନିନୀ ;
ପ୍ରାଣପୂ ଦେଇ ନିତି ପାଏ ଯେ ଅନୁରାଗ
ସେ ତୁମ ପ୍ରୀତି କେବେ ଭୁଲିନି ।

## ମିଳନ ବ୍ୟବଧି

କେଉଁ ଅଭିସାର ପାଇଁ ଇଙ୍ଗିତ ଦେଇ ମତେ
ପ୍ରଦୀପ ସେ ଜାଳିଗଲ ରଖି ଦୂରେ ମରୁ ପଥେ ?
କହ ପାରେ ନାହିଁ ଆଜ ଏ ଗୌରବ କଳ୍ପନା
ବନ୍ଧୁ ହେ କହ ମୋର ପ୍ରାଣେ
ଅଶ୍ରୁର ଲହରୀ ଚୂଳେ ଝଡ଼ରେ କପାଁ କାନ୍ତ ଜ୍ୟୋତ୍ସ୍ନା ?

## ମିଳନ ବ୍ୟବଧି

ଗରଳ କେ ଦେଲା ଢ଼ାଳି ସିନ୍ଧୁ ବୁକ ଚିରି ବନ୍ଧୁ ?
ପ୍ରାଚୀ ଭାଲେ ଦେଇଗଲା କେଗୋ ଅସ୍ତମିତ ଚନ୍ଦ୍ର ?
ଚିରଦଗ୍ଧ କବି ଯେ ଗାଏ ମରଣ-ମନ୍ତ୍ର-ଗୀତିକା ;
ବନ୍ଧୁ ହେ କହ ମୋର ପ୍ରାଣେ
ଜଳି ପୋଡ଼ି ଯାଇନକି ମୃଦୁ ପ୍ରୀତି ଅଦମିକା ?

ସ୍ମୃତି ଚରଣେ ଅର୍ପଣ କରି ଆଜି ନେଉଁ ଦାନ—
ମନେ ମନେ ଲଭୁଚି ମୁଁ ଅପୂର୍ବ ସନମାନ ?
କହି ପାରେ ନାହିଁ ସେଇ କପାଳର ତତ୍ତ୍ୱ କଥା ;
ବନ୍ଧୁ ହେ କହ ମୋର ପ୍ରାଣେ
ମିଳନ ବ୍ୟବଧି ଆଜି ଦିଏ ସୁଖ କିବା ବ୍ୟଥା ?

ନଭ ପଥେ ଢ଼ାଳି ଆଜି ନିସ୍ପୃତିର ଅପମାନ—
ରଖିଗଲି ସୃଷ୍ଟି ଦତ୍ତ ଜୀବନ ଅଦୃଶ୍ୟମାନ ;
ସୃଜନର ବ୍ୟଥାତଳେ ଜଳେ ତୁମ ପ୍ରୀତି-ଶିଖା ;
ବନ୍ଧୁ ହେ କହ ମୋର ପ୍ରାଣେ
ଅନୁଭବ ପାଇଁନକି ଏ ବିଷ-ଅମୃତ ଚର୍ଯ୍ୟା ?



# ମିଳନ ଭିକ୍ଷା

ଶରତର ସଦ୍ୟସ୍ନାତ ମଧୁର ଲଗନେ
ଜଳିଲା ଚନ୍ଦ୍ର ପ୍ରଦୀପ ନିର୍ମଳ ଗଗନେ ।
ମୃଦୁ ବାତେ ଦୋହଲିଲା ଶୁଭ୍ର ବସ୍ତ୍ରାଞ୍ଚଳ
ବାସନ୍ତକୁ ବାରୁଣୀର ଗୃହୁ ଦୂରଞ୍ଚଳ;
ଚଉଦିଗେ ବିଜୟ ଉତ୍ସବ—
ମନେହେଲା ପ୍ରକୃତିର ଜୁଟିଲ ବିଭବ ।

# ମିଳନ ଭିକ୍ଷା

ମନେ ପଡ଼େ ଆଜ ସଖି ! ଅଧା ଲେଖା କାବ୍ୟ,
ଝଙ୍କାରିତ ପ୍ରୀତି-ବୀଣା ସଦ୍ୟ ଅନୁଭବ୍ୟ;
ମନେହୁଏ ସ୍ନେହ ଆଜି ବିଷମ ସାଧନ;
ଘନରସେ ପବିର କି ଗୋପନ ସାଧନ ?
କି ରକାଳ ଗୁହେଁ ଅଟ୍ଟହାସେ—
ଜୀର୍ଣ୍ଣ ନୀଡ ଉଠେ ଥରି ପ୍ରଳୟ ବତାସେ ।

ପ୍ରଭାତର ପଦ୍ମ ସମ ସମଗ୍ର କାହାଣୀ,
ଶତ୍ତେ ମମ ମେଲି ଆସେ ପାଖୁଡ଼ା ଉଜାଣି;
ନୃତ୍ୟକରେ ଛନ୍ଦେଁ ଭ୍ରମି ବୃନ୍ଦାଣୀ-ଷଟ୍‌ପଦ,
ବିକଳ ପରଣେ ଢ଼ାଳେ ବିମୋହ ସଂପଦ ;
ହଜେ ସବୁ ମାନସ କଳ୍ପନା-
ପ୍ରୀତି ପାଇଁ ଭୋଗେ ସିନା ବିରହ ବେଦନା !

ଶୈଳ ଶୃଙ୍ଗେ ଲୁଚିଯାଏ ତପ୍ତ ବିବସ୍ୱାନ;
ପ୍ରକୃତି ରାଜ୍ୟରେ କେହୁ ନୁହେ ବଡସାନ;
ଭୃଙ୍ଗମାଳ ଗଲେ ବର୍ଜି ସରସିଜ ବନ-
ଧନ ଶୂନ୍ୟ ନୃପ ପାଶ ତେଜେ ଯେସନ୍ତେ ଜନ;
ସବୁ କରେ ନିଯୁକ୍ତ ନିର୍ଣ୍ଣୟ -
ଆତଜାତ ଭବେ ପ୍ରାଣୀ ଗଣର ସମସ୍ତ ।

## ସ୍ମୃତି

ବ୍ରଜରୁ ଫେରୁଛି ଗାଭୀ ସ୍ତନନ୍ଧୟ ପାଶେ-
କ୍ଷୁଦ୍ର ମୋ ଶିଶୁଟି ଗୃହେଁ ମୋ ଦ୍ୱାରେ ହତାଶେ;
ବକ୍ଷେ ମୋର ମଥାଦେଇ ଡାକେ ଭୁମରେ ଗୋ-
ସ୍ମୃତି ରଖିଗଲ ଆହ୍ୱା ଶିଶୁ ଅଧରେ ଗୋ;
ଦେବାଳୟେ ସନ୍ଧ୍ୟା ଖୁର ବାଜେ
କ୍ଷୀଣାଲୋକେ ଗୃହିଁ ମୁଁ ଯେ ସ୍ୱର୍ଣ୍ଣ ପ୍ରୀତି ମାଜେ ।

ସୁପ୍ରଶସ୍ତ ରାଜମାର୍ଗେ ଚଳିଛି ଜନତା-
କେ ପୁଣି ଫୁଲାଇ ଛାତି କେ ନୁଆଁଇ ମଥା;
କେ ଭୁଲିଛି ଆପଣାର ପୂର୍ବ ଜୀବନକା;
କେ ପୁଣି ପଥ ମସ୍ତକେ ଆଙ୍କେ ଅଶ୍ରୁଟିକା;
ନୁହେ କିଛି ଅସମ୍ଭବ ଭବେ-
କ୍ଷୁଧାଗ୍ରସ୍ତ କାଳଚକ୍ର ବୁଲୁଛି ନୀରବେ ।

ବ୍ୟସ୍ତବ୍ୟସ୍ତ ସ୍ମୃତିଫର୍ଦ୍ଦା ଉଠେ ଆଜ ମନେ-
ବେଦନପ୍ରାଣେ ଯେଉଁକଥା ଘଟିଛି ଗୋପନେ
କେତେ ତୃଷା କେତେ ଆଶା ମଧୁର ଅଧ୍ୟାୟ
ଲଭିପେ ଯାଇଛି ସଖି ! ଇନ୍ଦ୍ରଧନୁ ପ୍ରାୟ;
ପ୍ରଣୟୁକୁ ମର୍ମ ସ୍ଥଳେ ଜାକ
ପଚୁରେ 'ବିରହ ଆଉ ଅଛି କେତେ ବାକି?'

## ମିଳନ ଭିକ୍ଷା

ସେଦିନ ସେ ନିରଜନ ସୈକତେ ଆଶ୍ରମେ
ସ୍ୱାଧ ଶୋଭା ଉପଭୋଗେ ମଗ୍ନଥିଲୁ ଆମେ;
ଥିଲା ବେଳା କରାଙ୍ଗୁଳି ସେନେହେ ଛନ୍ଦିତ,
ଅସ୍ତଗାମୀ ରକ୍ତ ରବି କିରଣ ରଞ୍ଜିତ
ରତ୍ନାକର ଯାଉଥିଲା ଗାଇ-
ଲହରୀର ମୃଦୁ ଲୟେ ମାଦଳ ବଜାଇ ।

ଉଷାମେଘ ତଳେ କ୍ରୌଞ୍ଚ ମେଲି ଶ୍ୱେତପକ୍ଷ
ଦିଶୁଥିଲା ମେଘଦୂତ ଯକ୍ଷ ସମକକ୍ଷ,
ସେଦିଗେ ନିବନ୍ଧେ ଚାହିଁ ତୁମ ନେତ୍ର ବେନି
ହୃଦ କୋଣେ ଲୁଚାଇଲା କେତେ କଥା ଯେନ;
କ୍ରୌଞ୍ଚ ଗଲା ଚକ୍ରବାଳେ ଡଙ୍କି-
ଶାଳବନେ ଜଳିଗଲା ରକ୍ତ ବ୍ୟଥା ଭଜି ।

ମୋ ଆଡେ ଚାହିଁଲ ସଖି ବୁଲାଇ ବଦନ-
ନେତ୍ର ପ୍ରାନ୍ତେ ଦେଲି କେଉଁ ବିକଳ ଅଞ୍ଜନ;
ଅଧରେ ନଥିଲା ସ୍ନେହ ସୋହାଗର ବାରି;
ଅକୁହା କଥା ଅନ୍ତର ଦେଉଥିଲା ଢାରି
ତଥାପି ଓଠେ ଫୁଟାଇ ହାସ—
ଚେକିଥିଲ ଗଣ୍ଡେ ଫର୍ଦ୍ଦ ବିବଶ ନିଶ୍ୱାସ ।

# ସ୍ମୃତି

ବ୍ରଜରୁ ଫେରନ୍ତ ଗାଭୀ ସ୍ତନନ୍ଧୟ ପାଶେ-
କ୍ଷୁଦ୍ର ମୋ ଶିଶୁଟି ଗୃହେଁ ମୋ ଦଗେ ହତାଶେ;
ବକ୍ଷେ ମୋର ମଥାଦେଇ ଡାକେ ଭ୍ରମରେ ଗୋ-
ସ୍ମୃତି ରଖିଗଲ ଆହା ଶିଶୁ ଅଧରେ ଗୋ;
ଦେବାଳୟେ ସନ୍ଧ୍ୟା ଖୂର ବାଜେ
କ୍ଷୀଣାଲୋକେ ରହିଁ ମୁଁ ଯେ ସ୍ୱର୍ଗ ପ୍ରୀତି ମାଜେ ।

ସୁପ୍ରଶସ୍ତ ରାଜମାର୍ଗେ ଚଳନ୍ତ ଜନତା-
କେ ପୁଣି ଫୁଲାଇ ଗ୍ରୀବ କେ ନୁଆଁଇ ମଥା;
କେ ଭୁଲନ୍ତ ଆପଣାର ପୂର୍ବ ଜୀବନକା;
କେ ପୁଣି ପଥ ମସ୍ତକେ ଆଙ୍କେ ଅଶ୍ରୁ ଟିକା;
ନୁହେ କିଛୁ ଅସମ୍ଭବ ଭବେ-
କ୍ଷୁଧାଗ୍ରସ୍ତ କାଳଚକ୍ର ବୁଲନ୍ତ ନୀରବେ ।

ବ୍ୟକ୍ତିବ୍ୟସ୍ତ ସ୍ମୃତିଫର୍ଦ୍ଦା ଉଠେ ଆଜ ମନେ-
ବେଦନପ୍ରାଣେ ଯେଉଁକଥା ଘଟିନ୍ତ ଗୋପନେ
କେତେ ତୃଷା କେତେ ଆଶା ମଧୁର ଅଧ୍ୟାୟ
ଲଭିଯେ ଯାଇନ୍ତ ସଖି ! ଇନ୍ଦ୍ରଧନୁ ପ୍ରାୟ;
ପ୍ରଣୟୁକୁ ମର୍ମ ସ୍ଥଳେ ଡାକ
ପଶ୍ନରେ 'ବିରହ ଆଉ ଅଛି କେତେ ବାକି?'

ସେଦିନ ସେ ନିରଜନ ସୈକତେ ଅଙ୍ଗନେ
ସ୍ୱାଧ ଶୋଭା ଉପଭୋଗେ ମଗ୍ନଥିଲୁ ଆମେ;
ଥିଲା ବେଳ କଲ୍ଲଙ୍କ ଲି ସେନେହ୍ନ ଛନ୍ଦିତ,
ଅସ୍ତଗାମୀ ରକ୍ତ ରବି କିରଣ ରଞ୍ଜିତ
ରତ୍ନାକର ଯାଉଥିଲା ଗାଇ-
ଲହରୀର ମୃଦୁ ଲୟେଁ ମାଦଳ ବଜାଇ ।

ଉଷାମେଘ ତଳେ କ୍ରୌଞ୍ଚ ମେଲି ଶ୍ୱେତପକ୍ଷ
ଦିଶୁଥିଲ! ମେଘଦୂତ ଯକ୍ଷ ସମକକ୍ଷ,
ସେଦିନରେ ନିର୍ବେଜ ସ୍ପୃହାଁ ଭୂମ ନେତ୍ର ବେଣ
ହୃଦ କୋଣେ ଲୁଚିଇଲା କେତେ କଥା ବେଦନ;
କ୍ରୌଞ୍ଚ ଗଲା ଚକ୍ରବାଳେ ହଂସ-
ଶାଳବନେ ବିଳପିଲା ଚକ୍ର ବ୍ୟଥା ଭଙ୍ଗ ।

ମୋ ଆଡ଼େ ଚାହିଁଲ ସଖି ବୁଲାଇ ବଦନ-
ନେତ୍ର ପ୍ରାନ୍ତେ ଦଳି କେଉଁ ବିକଳ ଅଞ୍ଜନ;
ଅଧରେ ନଥିଲା ସ୍ନେହ ସୋହାଗର ବାଣ;
ଅକୁହା କଥା ଅନ୍ତର ଦେଉଥିଲା ଜାଣ
ତଥାପି ଓଠେ ଫୁଟାଇ ହାସ—
ଡେକଥିଲ ଗର୍ଣ୍ଣେ ଫୁଟେ ବିବଶ ନିଶ୍ୱାସ ।

# ସ୍ମୃତି

ମଉଳା ବଦନ ତୋଳି ମୋର ବକ୍ଷ ତଟେ ,
କହିଲ ଆଶା-ନିରଶା - ସ୍ନେହସିକ୍ତ କଣ୍ଠେ ;
'ଜୀବନକୁ ଧନ୍ୟ ତୁମେ କଲଗୋ ସଫଳ,
ପ୍ରେମ ମଧ୍ୟେ ବିକଶିତ ଶିଶୁ - ଶତଦଳ;
ସ୍ୱଚ୍ଛ ପ୍ରୀତି-କୁସୁମ ଚୟନେ
ତହୁଁ ବଳି ସଉଭାଗ୍ୟ କାହିଁ ଏ ଜୀବନେ?'

ମର୍ମକଥା ବୁଝିବାରେ ନଥିଲା ମୋ ତର ;
କେ ଜାଣଇ ତୁମ ପ୍ରାଣ ହୋଇବ ଆଖିର ?
କହିଗଲା ମନସ୍ତତ୍ତ୍ୱ ମନେ ମନେ ଧୀରେ
'ମାସ କେତେ ଅଛୁ ତୋର ପ୍ରିୟ ବିଚ୍ଛିତିରେ;'
ଶ୍ଲଥ ବାତେ ଗଲାତ ଚହଲି
କେଉଁ ଅଜଣା ଦେଶର କରୁଣ ମୁରଲୀ ?

ଆଜି ସେହି ବସୁଧା ଏ, ସେହି ସିନ୍ଧୁ ତୀର,
ଆଜି ସେହି ପ୍ରଦୋଷଏ , ସେହି ନୀଳ ନୀର;
ଆଜି ସେହି ବାଲିଶଯ୍ୟା-ସବୁହିଁ ନିକଟ;
ବ୍ୟଥାଞ୍ଜନେ ଚିତ୍ରେ କିନ୍ତୁ ସ୍ମୃତି ଚିତ୍ର ପଟ-
ସାଥିକରେ ଚକ୍ରବାକ ରବ ;
କାହୁଁ ଯିବ ପୂର୍ବଜନ୍ମ କୃତ ପରାଭବ ?

## ମିଳନ ଭିକ୍ଷା

ଆଜ ସଖି ! ଶରତର ଭୁବନ ଅଙ୍ଗନେ
ବିଜୟର ପଟ୍ଟୁଆର ଲାଗିଛି ଭୁବନେ ;
କେ ଥୋଉଛି ଦୀପାବଳୀ ଜଗତ ଦ୍ୱାରୀରେ ;
କେ ଗାଉଛି ପ୍ରୀତି-ଗୀତ କଳକଣ୍ଠ ଗିରେ ;
ଛୁଟି ଅଛୁ ଆନନ୍ଦର ସ୍ରୋତ —
ଦଗ୍ଧ ମୁଁ ଅଶ୍ରୁ ନଦୀର କରପତ୍ର ପାତ ।

ବିଷମୟ ଯୌବନରେ ଶୁଷ୍କ ମଧୁ କୋଷେ
ଯା'ଦେଇଛ ସାଇତିଛୁ ଗଭୀର ସନ୍ତୋଷେ ;
ଏକଭାଷା , ଏକବାଣୀ , ଏକଇ ଗୃହିଣୀ -
ମର୍ମେ ମୋର ବୁଝାଇଛ ସଚିତ୍ର କାହାଣୀ ,
ଅନ୍ତରର କନ୍ଦର୍ପ ଅୟନେ —
ସୁମଧୁର ପାଥେୟ ସେ ବିଷମ ଜୀବନେ ।

ଯା'ଦେଖିବ ଭବମଞ୍ଚେ ଚକିତ ନୟନେ—
ସବୁ ରଖିଯିବ ଖାଲି ତୁମର ଅଙ୍କନେ ;
ପରଜନ୍ମ ପାଇଁ ହେବ ଅମୃତ ନଶାଣ ;
କାବ୍ୟାମୃତେ ତୃପ୍ତି ଲଭୁ ନବାସିତ ପ୍ରାଣ ;
ଜୀବନର ଅନ୍ଧକାରେ ଜାଗି
ତୁମର ମିଳନ ମାଗେ ପ୍ରୀତ ଅନୁରାଗୀ ।

